# ବିଶ୍ୱଶାନ୍ତିର ପ୍ରତିଶ୍ରୁତି

ବଶ୍ୱନ୍ୟାୟ ମନ୍ଦରଙ୍କଦ୍ୱାରା ପ୍ରସ୍ତୁତ ହୋଇଥିବା
ଏକ ବବୃତ୍ତି

Language : Oriya

No. of copies Printed : 4000

Translated by : A Committee

BAHA'I PUBLISHING TRUST
P.O. BOX 19
NEW DELHI-110001, INDIA

# THE PROMISE OF WORLD PEACE

A Statement by
The Universal House of Justice



First Oriya Edition 1985
Second Oriya Edition August, 1991

ଏକାମ୍ର ଏଣ୍ଟରପ୍ରାଇଜର୍ସ, ଭୁବନେଶ୍ୱର-୨ରେ ମୁଦ୍ରିତ

## ବିଶ୍ୱର ଜନସାଧାରଣଙ୍କ ପ୍ରତି

ଯେଉଁ ମହାନ୍ ଶାନ୍ତି ପ୍ରତି ଶୁଭକାଂକ୍ଷୀ ଜନସାଧାରଣ ବହୁ ଶତାବ୍ଦୀ ଧରି ସେମାନଙ୍କର ଅନ୍ତଃକରଣକୁ ଉନ୍ମୁଖ ରଖି ଆସିଛନ୍ତି, ଯାହାର ଆଗମନ ଲାଗି କବି ଓ ଭବିଷ୍ୟଦ୍ରଷ୍ଟାଗଣ ସେମାନଙ୍କର ପୂର୍ବଦୃଷ୍ଟିକୁ ପୁରୁଷ ପୁରୁଷ ଧରି ବ୍ୟକ୍ତକରି ଆସିଛନ୍ତି, ଏବଂ ଯାହା ଉଦ୍ଦେଶ୍ୟରେ ମାନବ ସମାଜର ପବିତ୍ର ଧର୍ମଗ୍ରନ୍ଥାବଳୀ ଯୁଗ ଯୁଗ ଧରି ନିରବଚ୍ଛିନ୍ନ ଭାବେ ପ୍ରତିଶ୍ରୁତି ଦାନ କରିଆସିଛନ୍ତି, ତାହା ବହୁକାଳ ପରେ ଅଧୁନା ରାଷ୍ଟ୍ରମାନଙ୍କର ଅତି ନିକଟରେ ପଦାର୍ପଣ କରୁଛି । ଇତିହାସରେ ପ୍ରଥମ ଥରପାଇଁ ଏହି ଜଗତକୁ, ଏହାର ଅଗଣିତ ବିଭେଦଗ୍ରସ୍ତ ବ୍ୟକ୍ତିଙ୍କ ସହ, ଗୋଟିଏ ପରିପ୍ରେକ୍ଷୀରେ ଦୃଷ୍ଟିପାତ କରିବା ଲାଗି ପ୍ରତ୍ୟେକ ବ୍ୟକ୍ତିଙ୍କ ପକ୍ଷେ ସମ୍ଭବ ହୋଇଛି । ବିଶ୍ୱଶାନ୍ତି କେବଳ ସମ୍ଭବ ନୁହେଁ, ମାତ୍ର ଅପରିହାର୍ଯ୍ୟ । ଏହା ହେଉଛି, ଏହି ଜଗତର ବିକାଶମୂଳକ ଧାରାର ପରବର୍ତ୍ତୀ ପର୍ଯ୍ୟାୟ । ଜଣେ ମହାନ୍ ଚିନ୍ତାନାୟକଙ୍କ ଭାଷାରେ, "ମାନବ ଜାତିର ସାର୍ବଭୌମିକ ଏକତ୍ରୀକରଣ ।"

କେବଳ ପ୍ରାଚୀନ ପଦ୍ଧତିଗତ ଆଚରଣରେ ଅନମନୀୟଭାବେ ଅଟଳ ହୋଇ ରହିବା ଫଳରେ ଯେଉଁ କଳ୍ପନାତୀତ ଭୟାବହ ସୃଷ୍ଟିହେବ, ତାହା ପରେ ଶାନ୍ତି ପ୍ରତିଷ୍ଠା କରିବାକୁ ହେବ, ଅଥବା ପରାମର୍ଶମୂଳକ କାର୍ଯ୍ୟାନୁଷ୍ଠାନ ଦ୍ୱାରା ଏହାକୁ ସାଦରେ ଗ୍ରହଣ କରିବାକୁ ହେବ ? ଏହା ବର୍ତ୍ତମାନ ଭୂପୃଷ୍ଠରେ ବାସକରୁଥିବା ସମସ୍ତ ପ୍ରାଣୀଙ୍କ ପକ୍ଷେ ଏକ ମନୋନୟନର ବିଷୟ । ଏହି ଉଦ୍‌ବେଗଜନକ ସନ୍ଧିକ୍ଷଣରେ ଯେତେବେଳେ ଦୁର୍ଦ୍ଦମ ସମସ୍ୟାବଳୀ ରାଷ୍ଟ୍ରବୃନ୍ଦଙ୍କୁ ଜର୍ଜରିତ କରି ଏକ ସାର୍ବଜନୀନ ସାଧାରଣ ଉଦ୍‌ବିଗ୍ନତାରେ ଦ୍ରବୀଭୂତ ହୋଇଛି, ସେତେବେଳେ ଦ୍ୱନ୍ଦ୍ୱ ତଥା ଅବ୍ୟବସ୍ଥାର ଜୁଆରକୁ ପ୍ରତିହତ କରିବାରେ ଅସଫଳ

ହେବା, ଏକ ଅଯୌକ୍ତିକ ତଥା ଦାୟିତ୍ୱହୀନତାର କାର୍ଯ୍ୟ ବୋଲି ବୁଝିବାକୁ ହେବ ।

ବିଶ୍ୱଶାନ୍ତି ପ୍ରତିଷ୍ଠା ଦିଗରେ କେତେକ ଅନୁକୂଳ ଲକ୍ଷଣ ପରିଦୃଷ୍ଟ ହୋଇଛି : ଚଳିତ ଶତାବ୍ଦୀର ପ୍ରାରମ୍ଭରୁ ବିଶ୍ୱଶାନ୍ତି ପ୍ରତିଷ୍ଠା ଦିଗରେ କେତେକ ପଦକ୍ଷେପ ଗୃହୀତ ହୋଇଛି ଏବଂ ତାହାର ଶକ୍ତି କ୍ରମଶଃ ଦୃଢ଼ୀଭୂତ ହୋଇଛି ।

ଏହି ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଜାତିସଂଘ (League of Nations) ସୃଷ୍ଟ ହୋଇ ପରବର୍ତ୍ତୀକାଳରେ ତାହା ମିଳିତ ଜାତିସଂଘ (United Nations Organisation) ରୂପେ ବ୍ୟାପକ ଭିତ୍ତିରେ ପ୍ରସାର ଲାଭ କରିଛି ।

ଦ୍ୱିତୀୟ ବିଶ୍ୱମହାସମର ପରଠାରୁ ଅଧିକାଂଶ ରାଷ୍ଟ୍ର ସ୍ୱାଧୀନତା ଲାଭ କରିଛନ୍ତି, ଏବଂ ଏହାଦ୍ୱାରା ରାଷ୍ଟ୍ରନିର୍ମାଣ ପ୍ରକ୍ରିୟା ପରିପୂର୍ଣ୍ଣ ହେବାକୁ ଯାଉଛି ବୋଲି ସୂଚନା ମିଳୁଛି ।

ପାରସ୍ପରିକ ସମ୍ପର୍କ କ୍ଷେତ୍ରରେ ନବ ବିକାଶୋନ୍ମୁଖ ରାଷ୍ଟ୍ରଗୁଡ଼ିକ ଉନ୍ନତ ରାଷ୍ଟ୍ରବର୍ଗଙ୍କସହ ସଂଯୋଗ ସ୍ଥାପନ କରୁଅଛନ୍ତି ।

ଅଦ୍ୟାବଧି ଯେଉଁ ରାଷ୍ଟ୍ର ବା ଜାତିଗୁଡ଼ିକ ପରସ୍ପର ଠାରୁ ବିଚ୍ଛିନ୍ନ ରହି ବିରୋଧଭାବ ପ୍ରକାଶ କରି ଆସୁଥିଲେ, ବର୍ତ୍ତମାନ ସେମାନେ ବିଜ୍ଞାନସମ୍ମତ, ଶିକ୍ଷାଗତ, ଆଇନ୍‌ଗତ ଓ ଅର୍ଥନୈତିକ ତଥା ସାଂସ୍କୃତିକ କ୍ଷେତ୍ରରେ ଥିବା ଆନ୍ତଃରାଷ୍ଟ୍ରୀୟ ପରିକଳ୍ପନାଗୁଡ଼ିକରେ ପରସ୍ପରକୁ ସହଯୋଗ କରିବାରେ ଲାଗିଛନ୍ତି ।

ଅଧୁନାତନ ଦଶନ୍ଧୀରେ ଆନ୍ତଃରାଷ୍ଟ୍ରୀୟ ବିଶ୍ୱହିତୈଷୀ ଅନୁଷ୍ଠାନଗୁଡ଼ିକର ସଂଖ୍ୟାରେ ଅଭୂତପୂର୍ବ ଅଭିବୃଦ୍ଧି ଘଟୁଛି ।

ଯୁଦ୍ଧବର୍ଜନ ପ୍ରତି ଆହ୍ୱାନ ଦେଉଥିବା ମହିଳା ତଥା ଯୁବକମାନଙ୍କର ଆନ୍ଦୋଳନ କ୍ରମଶଃ ସମ୍ପ୍ରସାରିତ ହେଉଛି ।

ବ୍ୟକ୍ତିଗତ ଯୋଗାଯୋଗ ମାଧ୍ୟମରେ ଆପୋଷ ବୁଝାମଣା ପ୍ରତି ଗୁରୁତ୍ୱ ଦେଉଥିବା ସାଧାରଣ ଜନତାର ସ୍ୱତଃସ୍ଫୁର୍ତ୍ତଭାବେ କ୍ରମୋନ୍ନତି ଘଟୁଛି ।

ଏହି ଅସାଧାରଣ ଆଶୀଷପ୍ରାପ୍ତ ଶତାବ୍ଦୀରେ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ସମ୍ପର୍କୀୟ ଅଗ୍ରଗତି ବିଶ୍ୱର ସାମାଜିକ ବିକାଶ କ୍ଷେତ୍ରରେ ଏକ ଉତ୍ତାଳ ତରଙ୍ଗର ଆଭାସ ଦେଉଛି, ଏବଂ ତାହା ଏପରି ମାଧ୍ୟମର ସୂଚନା ଦେଉଛି, ଯଦ୍ୱାରା ମାନବଜାତିର ବ୍ୟାବହାରିକ ସମସ୍ୟାବଳୀ ସମାହିତ ହୋଇପାରିବ । ବାସ୍ତବିକ୍ ସେଗୁଡ଼ିକ ଏକ ଐକ୍ୟବଦ୍ଧ ବିଶ୍ୱର ଜଟିଳ ଜୀବନ ସମ୍ପର୍କୀୟ ପ୍ରଶାସନିକ କ୍ଷେତ୍ରରେ ଯଥାର୍ଥ ଉପାଦାନଗୁଡ଼ିକୁ ଯୋଗାଇଥାନ୍ତି । ତଥାପି ବାଧାବିଘ୍ନ ରହିଛି; ଆଶଙ୍କା, ଦୁର୍ଭାବନା, ଅନ୍ଧବିଶ୍ୱାସ, ସଂଶୟ ଓ ସଂକୀର୍ଣ୍ଣ ଆତ୍ମସ୍ୱାର୍ଥ ସମସ୍ତ ରାଷ୍ଟ୍ର ତଥା ଜନସାଧାରଣଙ୍କର ଆପୋଷ ସମ୍ପର୍କ କ୍ଷେତ୍ରରେ ପ୍ରତିବନ୍ଧକ ସ୍ୱରୂପ ବିଦ୍ୟମାନ ରହିଛି ।

ଏହି ଅବସରରେ, ଏକ ଆଧ୍ୟାତ୍ମିକ ତଥା ନୈତିକ ଦାୟିତ୍ୱର କାରଣ ଯୋଗୁଁ ଆମେ ଆପଣମାନଙ୍କ ଧ୍ୟାନକୁ ସେହି ଗହନ ଅନ୍ତର୍ଦୃଷ୍ଟିସମ୍ପନ୍ନ ତଥ୍ୟ ଗୁଡ଼ିକ ଆଡ଼କୁ ଆକର୍ଷିତ କରିବା ନିମିତ୍ତ ପ୍ରଣୋଦିତ ହେଉଛୁ, ଯାହାକି ବାହା'ଇ ଧର୍ମର ପ୍ରତିଷ୍ଠାତା ବାହା'ଉଲ୍ଲାହ୍ ଏକ ଶତାବ୍ଦୀରୁ ଅଧିକ କାଳ ପୂର୍ବେ ମାନବ-ଜାତିର ପ୍ରଶାସକବର୍ଗଙ୍କ ନିକଟକୁ ପ୍ରେରଣ କରିଥିଲେ । କାରଣ ତାଙ୍କ ଧର୍ମର ତତ୍ତ୍ୱାବଧାରକ ରୂପେ ଦାୟିତ୍ୱ ଗ୍ରହଣ କରିଥିବା ହେତୁ ଆମେ ଏହାକୁ ନିଜସ୍ୱ କର୍ତ୍ତବ୍ୟ ବୋଲି ମନେ କରୁଛୁ ।

ବାହା'ଉଲ୍ଲାହ୍ ଲେଖିଥିଲେ, "ହାୟ, ହତାଶାର ଝଞ୍ଜାବାତ ପ୍ରତିଟି ଦିଗରୁ ପ୍ରବାହିତ ହେଉଛି, ଏବଂ ମାନବଜାତିକୁ ବିଭେଦଗ୍ରସ୍ତ ତଥା ଆହତ କରୁଥିବା ସଂଘର୍ଷ ପ୍ରତିଦିନ ବୃଦ୍ଧିପ୍ରାପ୍ତ ହେଉଛି । ଭବିଷ୍ୟତରେ ଘଟିବାକୁ ଥିବା ତୁମୁଳ ଆଲୋଡନ ତଥା ବିଭ୍ରାଟର ଲକ୍ଷଣଗୁଡ଼ିକୁ ବର୍ତ୍ତମାନ ସୂକ୍ଷ୍ମରୂପେ ବିଗ୍ଧର କରାଯାଇ ପାରିବ । କାରଣ, ପ୍ରଚଳିତ ବ୍ୟବସ୍ଥାରେ ରହିଥିବା ତ୍ରୁଟିଗୁଡ଼ିକ ଏହି ତଥ୍ୟରୁ

ସୁସ୍ପଷ୍ଟ ହୋଇଯାଉଛି କି, ମିଳିତ ଜାତିସଂଘ ରୂପେ ସଙ୍ଗଠିତ ହୋଇଥିବା ରାଷ୍ଟ୍ରଗୁଡ଼ିକ ସାମରିକ କୋଳୁଆ ଭୟକୁ ଏ ପର୍ଯ୍ୟନ୍ତ ହଟାଇ ନେବାକୁ ସମର୍ଥ ନୁହନ୍ତି । ଆଉ ମଧ୍ୟ ଆନ୍ତଃରାଷ୍ଟ୍ରୀୟ ଅର୍ଥନୈତିକ ବ୍ୟବସ୍ଥାରେ ଆଶଂକିତ ବ୍ୟର୍ଥତା, ଅରାଜକତା ଓ ଆତଙ୍କବାଦର ସମ୍ପ୍ରସାରଣ ଏବଂ ପୂର୍ବୋକ୍ତ ବ୍ୟାଧି ତଥା ଅନ୍ୟାନ୍ୟ ବ୍ୟାଧିଗୁଡ଼ିକ କାରଣରୁ କୋଟିକୋଟି ବ୍ୟକ୍ତିଙ୍କର ଯେଉଁ ଭୟଙ୍କର ଦୁଃଖକଷ୍ଟ ନିରନ୍ତର ବୃଦ୍ଧିପ୍ରାପ୍ତ ହେବାରେ ଲାଗିଛି, ତାହାର ନିରାକରଣ ଲାଗି ସେମାନେ ଅସାମର୍ଥ୍ୟ ପ୍ରକାଶ କରୁଛନ୍ତି । ବାସ୍ତବିକ୍, ଆକ୍ରମଣ ଓ କଳହ ଆମ ସାମାଜିକ, ଅର୍ଥନୈତିକ ତଥା ଧର୍ମୀୟ ବ୍ୟବସ୍ଥାକୁ ଏତେ ପରିମାଣରେ ସ୍ୱାଭାବିକ ଗୁଣରେ ଚିହ୍ନିତ କରୁଛି ଯେ, ଅଧିକାଂଶ ବ୍ୟକ୍ତି ଉକ୍ତ ଦୃଷ୍ଟିକୋଣର ବଶ୍ୟତା ସ୍ୱୀକାର କରି ଭାବୁଛନ୍ତି ଏତାଦୃଶ ଆଚରଣ ମାନବ ପ୍ରବୃତ୍ତିର ସହଜାତ, ତେଣୁ ଏହାର ମୂଳୋତ୍ପାଟନ ଅସମ୍ଭବ

ଏହି ଦୃଷ୍ଟିକୋଣର ଗଭୀର ପ୍ରଭାବରୁ ମାନବଜାତିର କାର୍ଯ୍ୟକଳାପରେ ଏପରି ଏକ ବିରୋଧଭାବ ସୃଷ୍ଟ ହୋଇଛି, ଯାହାକି ତାକୁ ନିଷ୍କ୍ରିୟ ବା ଗତିହୀନ କରି ଦେଇଛି । ଏକ ଦିଗରୁ ଦେଖିଲେ, ସମସ୍ତ ରାଷ୍ଟ୍ରର ବ୍ୟକ୍ତିଗଣ ଶାନ୍ତି ଓ ସଙ୍ଗତି ପାଇଁ ନିଜର ବ୍ୟଗ୍ରତାକୁ କେବଳ ଉଦ୍‌ଘୋଷିତ କରୁନାହାନ୍ତି, ମାତ୍ର ସେମାନଙ୍କର ଦୈନନ୍ଦିନ ଜୀବନରେ ଯନ୍ତ୍ରଣା ସୃଷ୍ଟି କରୁଥିବା ମର୍ମନ୍ତୁଦ ଆଶଙ୍କାର ବିଲୟ ନିମିତ୍ତ ମଧ୍ୟ ସେମାନେ ଏହାପ୍ରତି ଆଗ୍ରହ ପ୍ରକାଶ କରୁଅଛନ୍ତି । ଅନ୍ୟପକ୍ଷରେ, ଏହି ସିଦ୍ଧାନ୍ତକୁ ମଧ୍ୟ ସେମାନେ ନିର୍ବିଘ୍ନରେ ସ୍ୱୀକାର କରି ନେଉଛନ୍ତି ଯେ, ମନୁଷ୍ୟ ଏକ ସ୍ୱାର୍ଥପର ଓ ଆକ୍ରମଣକାରୀ ପ୍ରାଣୀ ହୋଇଥିବା ହେତୁ ସେ ଏପରି ଏକ ସାମାଜିକ ବ୍ୟବସ୍ଥା ନିର୍ମାଣ କରିବାରେ ସମ୍ପୂର୍ଣ୍ଣ ଅପାରଗ, ଯାହାକି ଏକାଦିକ୍ରମେ ଶକ୍ତିଶାଳୀ ତଥା ଶାନ୍ତି, ପ୍ରଗତି ଓ ସଙ୍ଗତିପୂର୍ଣ୍ଣ ବ୍ୟବସ୍ଥା ହେବା ସାଥେ ସାଥେ ବ୍ୟକ୍ତିର ସୃଜନାତ୍ମକ ତଥା ଉଦ୍ଭବ ଶକ୍ତିକୁ ସ୍ୱାଧୀନତା ଦେଇ ମଧ୍ୟ ସହଯୋଗ ଓ ଆପୋଷ ଆଦାନ ପ୍ରଦାନ ଉପରେ ଆଧାରିତ ହୋଇଥାଏ ।

ଶାନ୍ତିର ପ୍ରୟୋଜନୀୟତା ଯେହେତୁ ଅଧିକରୁ ଅଧିକ ଅତ୍ୟାବଶ୍ୟକ ହୋଇଉଠୁଛି, ତେଣୁ ଶାନ୍ତି ଉପଲବ୍ଧି ପଥରେ ବାଧା ସୃଷ୍ଟି କରୁଥିବା ଉକ୍ତ ମୌଳିକ ବିରୋଧିତା ସେହି ଭ୍ରାନ୍ତଧାରଣା ଗୁଡ଼ିକର ଏକ ପୁନର୍ମୂଲ୍ୟାୟନ ଦାବୀ କରୁଛି । କାରଣ, ଏହି ଭ୍ରାନ୍ତଧାରଣାଗୁଡ଼ିକ ଉପରେ ହିଁ ମାନବଜାତିର ଐତିହାସିକ ସଙ୍କଟର ସାଧାରଣ ଦୃଷ୍ଟିକୋଣ ଆଧାରିତ ହୋଇ ରହିଥାଏ । ଭାବପ୍ରବଣ ନହୋଇ ପରୀକ୍ଷା କଲେ, ଏହା ପ୍ରମାଣିତ ହୁଏ ଯେ, ମନୁଷ୍ୟର ଉକ୍ତ ଆଚରଣ ଜଣକର ବାସ୍ତବ ଆତ୍ମସତ୍ତାକୁ ପ୍ରକାଶ କରିବା ଦୂରେ ଥାଉ, ତାହା କେବଳ ମାନବୀୟ ଆତ୍ମାର ଏକ ବିକୃତିକୁ ପ୍ରଦର୍ଶିତ କରିଥାଏ । ଏହି ବିଷୟ ଉପରେ ଆତ୍ମସନ୍ତୋଷ ଲାଭ କଲାପରେ ସମସ୍ତ ମନୁଷ୍ୟ ସେହି ଗଠନମୂଳକ ସାମାଜିକ ଶକ୍ତିକୁ ଗତିଶୀଳ କରିବା ନିମିତ୍ତ ସମର୍ଥ ହୋଇପାରିବେ । କାରଣ, ତାହା ମନୁଷ୍ୟ ସ୍ୱଭାବର ଅନୁରୂପ ହୋଇଥିବା ହେତୁ ଯୁଦ୍ଧ ଓ ବିରୋଧିତା ସ୍ଥାନରେ ସମନ୍ୱୟ ତଥା ସହଯୋଗୀତାକୁ ପ୍ରୋତ୍ସାହିତ କରାଇବ ।

ଉପରୋକ୍ତ ମାର୍ଗକୁ ମନୋନୀତ କରିବା ଅର୍ଥ, ମାନବସମାଜର ଅତୀତକୁ ଅଗ୍ରାହ୍ୟ ନକରି ଏହାକୁ ଉତ୍ତମ ରୂପେ ହୃଦୟଙ୍ଗମ କରିବା । ମାନବୀୟ ବ୍ୟାପାରବଳୀ ମଧ୍ୟରେ ଘଟୁଥିବା ସାମ୍ପ୍ରତିକ ବିଶ୍ୱ ବିଶୃଙ୍ଖଳାକୁ ତଥା ସଙ୍କଟ ପୂର୍ଣ୍ଣସ୍ଥିତିକୁ ବାହ'ଇ ଧର୍ମ ଏକ ଆଙ୍ଗିକ ପଦ୍ଧତିଗତ ସ୍ୱାଭାବିକ ପର୍ଯ୍ୟାୟ ରୂପେ ମନେକରେ, ଯାହାକି, ଅବଶେଷରେ ନିର୍ବିବାଦରେ ମାନବଜାତିକୁ ଏପରି ଏକ ସାମାଜିକ ବ୍ୟବସ୍ଥା ଆଡ଼କୁ ପରିଚାଳିତ କରିନେବ, ଯେଉଁଥିରେ ତାହାର ଏକତ୍ରୀକରଣ ଘଟିବ, ଏବଂ ଯାହାର ଅନ୍ତିମ ସୀମା ଏହି ଜଗତର ଅନ୍ତର୍ଭୁକ୍ତ ହୋଇ ରହିଥିବ; ଅର୍ଥାତ୍ ତାହା ବିଶ୍ୱ ବ୍ୟବସ୍ଥା ନାମରେ ଖ୍ୟାତ ହୋଇଥିବ । ଏକ ସୁସ୍ପଷ୍ଟ ଆଙ୍ଗିକସଂସ୍ଥା ସଦୃଶ, ମାନବଜାତି ଏହାର ସଦସ୍ୟମାନଙ୍କ ଜୀବନର ବାଲ୍ୟାବସ୍ଥା ତଥା ଶୈଶବାବସ୍ଥା ଅନୁରୂପ ବିକାଶଶୀଳ ପର୍ଯ୍ୟାୟମାଳା ମଧ୍ୟରେ ବିକାଶପ୍ରାପ୍ତ ହୋଇ ଆସିଛି, ଏବଂ ଦୀର୍ଘପ୍ରତୀକ୍ଷିତ ଯୁଗର ଅଭ୍ୟୁଦୟ ପ୍ରତି ନିକଟତର ହୋଇ ଏହାର ଦୁର୍ଦ୍ଦାନ୍ତ କୈଶୋରବସ୍ଥାର ଚରମ ସୀମାରେ ବର୍ତ୍ତମାନ ଉପନୀତ ହୋଇଛି ।

ଏହା ଏକ ସୁସ୍ପଷ୍ଟ ସ୍ୱୀକାରୋକ୍ତି ଯେ, କୁସଂସ୍କାର, ଯୁଦ୍ଧବିଗ୍ରହ ଓ ଶୋଷଣ ଏକ ପ୍ରକାଣ୍ଡ ଐତିହାସିକ ଧାରା ମଧ୍ୟରେ ଗତି କରୁଥିବା ଅପରିପକ୍ୱ ଅବସ୍ଥାର ବାହ୍ୟିକ ପ୍ରକାଶ ହୋଇ ରହିଆସିଛି । ଆଜି ମାନବ ସମାଜ ଏପରି ଏକ ଅପରିହାର୍ଯ୍ୟ ବିଶୃଙ୍ଖଳା ମଧ୍ୟରେ ଗତି କରୁଛି, ଯାହାକି ସାମୂହିକ ରୂପେ ଏହାର ଆଗାମୀ ଯୁଗର ଆଗମନକୁ ଚିହ୍ନିତ କରୁଛି । ଏହା ହତାଶାର କାରଣ ନୁହେଁ; ପରନ୍ତୁ, ଏହା ହେଉଛି ଏକ ଶାନ୍ତିପୂର୍ଣ୍ଣ ଜଗତର ନିର୍ମାଣଜନୀତ ବିରାଟ ଉଦ୍ୟୋଗର ଦାୟିତ୍ୱ ପାଳନ ନିମିତ୍ତ ଏକ ପୂର୍ବାନୁଷଙ୍ଗିକତା । ଏପରି ଏକ ଉଦ୍ୟୋଗର ନିର୍ମାଣ କାର୍ଯ୍ୟ ସମ୍ଭବ ହୋଇପାରିବ; ବସ୍ତୁତଃ ଏହା ନିମିତ୍ତ ଆବଶ୍ୟକୀୟ ରଚନାତ୍ମକ ଶକ୍ତିଗୁଡ଼ିକ ବିଦ୍ୟମାନ ରହିଛି । ତେଣୁ ଏକତ୍ରୀକରଣ ଉପରେ ଆଧାରିତ ଏକ ସାମାଜିକ ଗଠନ ପ୍ରଣାଳୀ ନିର୍ମିତ ହୋଇପାରିବ । ଏହି ବିଷୟକୁ ପରୀକ୍ଷା କରି ଦେଖିବା ନିମିତ୍ତ ଆମେ ଆପଣମାନଙ୍କୁ ଅନୁରୋଧ କରୁଅଛୁ ।

ନିକଟ ଭବିଷ୍ୟତରେ ଯେତେ ଦୁର୍ଦ୍ଦଶା ଓ ଉପଦ୍ରବ ଘଟିବାକୁ ଥିଲେ ସୁଦ୍ଧା; ଏବଂ ତତ୍କାଳୀନ ପରିସ୍ଥିତି ଯେତେ ଅନ୍ଧକାରମୟ ହେଲେ ମଧ୍ୟ ବାହ'ଇ ଗୋଷ୍ଠୀ ବିଶ୍ୱାସ କରେଯେ, ଅବଶେଷରେ ମାନବଜାତି ଏହି ସର୍ବୋଚ୍ଚ ଯାତନାକୁ ଆସ୍ଥାର ସହ ପ୍ରତିହତ କରିପାରିବ । ସଭ୍ୟତାର ବିଲୟ ପ୍ରତି ଆପତ୍କାଳୀନ ସତର୍କୀକରଣ ଦେବା ଦୂରେ ଥାଉ, ଯେଉଁ ଆଲୋଡ଼ିତ ପରିବର୍ତ୍ତନ ଆଡ଼କୁ ମାନବ ଜାତି ସଦା ଦ୍ରୁତଗତିରେ ଧାବମାନ ହେଉଛି, ତାହା "ମାନବ ସ୍ଥିତିରେ ଜନ୍ମଗତ ହୋଇ ରହିଥିବା ବିଶାଳଶକ୍ତିକୁ ଉନ୍ମୋଚିତ କରିଦେବ," ଏବଂ "ଭୂପୃଷ୍ଠରେ ରହିଥିବା ତାହାର ଲକ୍ଷ୍ୟ ସମ୍ପର୍କୀୟ ପରିପୂର୍ଣ୍ଣତା ଓ ତାହାର ଆତ୍ମ-ସତ୍ତାର ସ୍ୱାଭବିକ ଚମତ୍କାରିତାକୁ ଉଦ୍‌ଘାଟିତ କରିଦେବ ।"

# ପ୍ରଥମ

ଯେଉଁ ଈଶ୍ୱରଦତ୍ତ ପ୍ରତିଭା ମାନବକୁ ଅନ୍ୟ ସମସ୍ତ ପ୍ରାଣୀଠାରୁ ପୃଥକ୍ କରି ରଖିଛି, ତାହାର ସାରମର୍ମ "ମାନବୀୟ ଚେତନା" ନାମରେ ସର୍ବବିଦିତ ହୋଇଛି । ମନ ହେଉଛି ତାହାର ଏକ ଅପରିହାର୍ଯ୍ୟ ଗୁଣ । ଏହାର ନୈସର୍ଗିକ ଗୁଣାବଳୀ ମାନବଜାତିକୁ ସଭ୍ୟତାଗୁଡ଼ିକର ନିର୍ମାଣ ତଥା ଭୌତିକ-ସମୃଦ୍ଧିଲାଭର କ୍ଷମତାକୁ ପ୍ରଦାନ କରିଛି । କିନ୍ତୁ କେବଳ ଏହି ଧରଣର କର୍ମ-ସମ୍ପାଦନରେ ମାନବୀୟ ଚେତନା କଦାପି ସନ୍ତୁଷ୍ଟ ହୋଇ ରହିନାହିଁ । କାରଣ ତାହାର ରହସ୍ୟମୟ ଚରିତ୍ର ତାହାକୁ ଏକ ଅତୀନ୍ଦ୍ରିୟତାର ଦିଗଆଡ଼କୁ, ଏକ ଅଦୃଶ୍ୟ ଜଗତ ଆଡ଼କୁ, ଏକ ସର୍ବଶେଷ ବାସ୍ତବତା ତଥା ସକଳ ନିର୍ଯ୍ୟାସର ଅଜ୍ଞେୟନିର୍ଯ୍ୟାସ ସେହି ସର୍ବବିଦିତ ପରମେଶ୍ୱରଙ୍କ ଆଡ଼କୁ ଉନ୍ମୁଖ ରଖିଛି । ଆଧ୍ୟାତ୍ମିକ ଜ୍ୟୋତିଷ୍କମାନଙ୍କ ଦ୍ୱାରା ଆନୀତ ହୋଇଥିବା ଧର୍ମସମୂହ ମାନବ-ଜାତି ତଥା ସେହି ସର୍ବଶେଷ ବାସ୍ତବତାଙ୍କ ମଧ୍ୟରେ ଯୋଗସୂତ୍ର ସ୍ଥାପନ କରି ଆସିଛନ୍ତି; ଏବଂ ମାନବଜାତିର ସାମର୍ଥ୍ୟକୁ ସାମାଜିକ ପ୍ରଗତି ମଧ୍ୟରେ ସମନ୍ୱୟ ରକ୍ଷାକରି ଆଧ୍ୟାତ୍ମିକ ଦିଗରେ ସଫଳତା ଅର୍ଜନ କରିବା ଉଦ୍ଦେଶ୍ୟରେ ସଞ୍ଜୀବିତ ଓ ସଂଶୋଧିତ କରିଅଛନ୍ତି ।

ବିଶ୍ୱଶାନ୍ତି ଲାଭ କରିବା, ତଥା ଯଥାର୍ଥ ଭାବେ ମାନବୀୟ ବ୍ୟାପାର-ବଳୀକୁ ସନ୍ନିବେଶିତ କରିବା ନିମିତ୍ତ ନିୟୋଜିତ ହେଉଥିବା କୌଣସି ଅପରିହାର୍ଯ୍ୟ ପ୍ରଚେଷ୍ଟା କଦାପି ଧର୍ମକୁ ଅଗ୍ରାହ୍ୟ କରି ନପାରେ । ଏଥି ମଧ୍ୟରେ ଥିବା ମନୁଷ୍ୟର ଉପଲବ୍ଧି ଓ ସାଧନା ବହୁଳ ଭାବେ ଇତିହାସର ମୁଖ୍ୟ ଉପାଦାନ ହୋଇ ରହିଆସିଛି । ଜଣେ ବିଖ୍ୟାତ ଐତିହାସିକ ଧର୍ମକୁ ମାନବୀୟ ଚରିତ୍ରର ଏକ ବିଶିଷ୍ଟ ଗୁଣରୂପେ ଅଭିହିତ କରିଛନ୍ତି । ଏହି ବିଶିଷ୍ଟ ଗୁଣର ଅପପ୍ରୟୋଗ ସମାଜରେ ବହୁ ବିଶୃଙ୍ଖଳା ସୃଷ୍ଟି କରିଛି । ଅଥଚ ବ୍ୟକ୍ତି ବିଶେଷ ମଧ୍ୟରେ ରହିଥିବା ଏହି ବିଶୃଙ୍ଖଳାକୁ କେହି ଅଗ୍ରାହ୍ୟ କରିପାରିବେ ନାହିଁ ।

କିନ୍ତୁ କୌଣସି ନିରପେକ୍ଷ ପର୍ଯ୍ୟବେକ୍ଷକ ସଭ୍ୟତାର ମହାଶକ୍ତିଶାଳୀ ପ୍ରକାଶକରଣ ଦିଗରେ ଧର୍ମଦ୍ୱାରା ନିୟୋଜିତ ହେଉଥିବା ଗୁରୁତ୍ୱପୂର୍ଣ୍ଣ ପ୍ରଭବକୁ କଦାପି ହେୟ ମନେ କରିବେ ନାହିଁ । ଅଧିକନ୍ତୁ, ଆଇନ୍ ଓ ନୈତିକତା ଉପରେ ଏହାର ଯେଉଁ ପ୍ରତ୍ୟକ୍ଷ ପ୍ରଭବ ପଡ଼ିଛି, ତାହାଦ୍ୱାରା ସାମାଜିକ ବ୍ୟବସ୍ଥା ପ୍ରତି ଏହାର ଉପାଦେୟତା ବାରମ୍ବାର ସ୍ୱତଃ ପ୍ରମାଣିତ ହୋଇଯାଇଛି ।

ଧର୍ମକୁ ଏକ ସାମାଜିକ ଶକ୍ତିରୂପେ ଗ୍ରହଣ କରି ବାହା'ଉଲ୍ଲାହ୍ କହିଛନ୍ତି : "ବିଶ୍ୱରେ ଶୃଙ୍ଖଳାସ୍ଥାପନ, ତଥା ତନ୍ମଧ୍ୟରେ ବାସକରୁଥିବା ସମସ୍ତ ପ୍ରାଣୀଙ୍କର ଶାନ୍ତି ଓ ତୃପ୍ତି ନିମିତ୍ତ ଉଦ୍ଦିଷ୍ଟ ହୋଇଥିବା ସମସ୍ତ ମାଧ୍ୟମ ମଧ୍ୟରେ ଧର୍ମ ହେଉଛି ଶ୍ରେଷ୍ଠ ।" ଧର୍ମରେ ଦେଖା ଦେଉଥିବା ନିଷ୍ପ୍ରଭତା ଓ ଦୁର୍ନୀତିକୁ ଲକ୍ଷ୍ୟରଖି ସେ ଉଲ୍ଲେଖ କରିଛନ୍ତି : "ଧର୍ମ ପ୍ରଦୀପ ମଳିନ ହୋଇଗଲେ ବିଭ୍ରାଟ ଓ ବିଶୃଙ୍ଖଳା ଦେଖାଦେବ, ଏବଂ ନିରପେକ୍ଷତା, ନ୍ୟାୟ, ସ୍ଥିରତା ଓ ଶାନ୍ତିର ଆଲୋକ ଉଦ୍‌ଭାସିତ ହୋଇପାରିବ ନାହିଁ ।" ଏହାର ପରିଣତିଜନିତ ଭୟାବହତାକୁ ଇଙ୍ଗିତଦେଇ ବାହା'ଈ ରଚନାବଳୀ ନିର୍ଦ୍ଦେଶକରେ ଯେ, "ମାନବୀୟ ଚରିତ୍ରର ବିକୃତି, ମାନବୀୟ ଆଚରଣର ଅଧୋପତନ, ମାନବୀୟ ଅନୁଷ୍ଠାନଗୁଡ଼ିକର ଦୁର୍ନୀତି ଓ ବୁରାଗ୍ରହ, ଏହି ପରିସ୍ଥିତିରେ ଅତ୍ୟଧିକ ନିକୃଷ୍ଟ ଓ ବିବାଦମାନ ଦିଗରେ ନିଜକୁ ଉଦ୍‌ଘାଟିତ କରେ । ମାନବୀୟ ଚରିତ୍ରର ଅଧୋପତନ ଘଟେ, ଆତ୍ମ-ବିଶ୍ୱାସ ବିଚଳିତ ହୋଇଯାଏ; ଶାନ୍ତି ଶୃଙ୍ଖଳାର ସ୍ନାୟୁମଣ୍ଡଳ ନିସ୍ତବ୍ଧ ହୋଇଯାଏ; କର୍ତ୍ତବ୍ୟ, ସଂହତି, ପାରସ୍ପରିକ ସାହାଯ୍ୟ ଓ ଅନୁରକ୍ତିର ବିଗ୍ରହବୋଧ ବିକୃତ ହୋଇଯାଏ, ଏବଂ ପ୍ରଶାନ୍ତି, ଆନନ୍ଦ ଓ ଆଶାର ଉପଲବ୍ଧି କ୍ରମଶଃ ନିଃଶେଷ ହୋଇଯାଏ ।"

ସୁତରାଂ, ଯଦି ମାନବଜାତି ଏପରି ଏକ ନିଷ୍କ୍ରିୟ ଅବସ୍ଥାରେ ପଦାର୍ପଣ କରିଥାଏ; ତାହାହେଲେ ଏହାକୁ ବିପଥଗାମୀ କରୁଥିବା ମାୟାବିନୀସ୍ୱର ତଥା ନିଜର ଅବହେଳା ପ୍ରତି ତୀକ୍ଷ୍ଣଦୃଷ୍ଟି ଦେବାକୁ ହେବ; ଏବଂ ଧର୍ମ ନାମରେ ବିକାରଗ୍ରସ୍ତ କରୁଥିବା ଭୁଲ୍ ବୁଝାମଣା ତଥା ବିଶୃଙ୍ଖଳାର ମୂଳକାରଣକୁ

ଖୋଜି ବାହାର କରିବାକୁ ହେବ । ଯେଉଁମାନେ ନିଜସ୍ୱାର୍ଥ ହେତୁ ଅନ୍ଧଭବରେ ସେମାନଙ୍କର ନିର୍ଦ୍ଦିଷ୍ଟ ରକ୍ଷଣଶୀଳ ମନୋବୃତ୍ତିକୁ ଯାବୁଡ଼ି ଧରିଛନ୍ତି, ଯେଉଁମାନେ ଈଶ୍ୱରୀୟ ଅବତାରମାନଙ୍କର ବଚନାବଳୀର ତ୍ରୁଟି ଓ ଦ୍ୱନ୍ଦ୍ୱପୂର୍ଣ୍ଣ ସମୀକ୍ଷାକୁ ସେମାନଙ୍କର ନିଷ୍ଠାପର ଅନୁଗାମୀମାନଙ୍କ ଉପରେ ଜୋର୍ କରି ଲଦି ଦେଉଛନ୍ତି, ସେମାନେ ଏହି ଭ୍ରମ ଓ ଅବ୍ୟବସ୍ଥା ଲାଗି ସର୍ବତୋଭବେ ଦାୟୀ ଅଟନ୍ତି । ଏହି ଭ୍ରମ ଅବ୍ୟବସ୍ଥାକୁ ବିଶ୍ୱାସ, ତର୍କ, ବିଜ୍ଞାନ ଓ ଧର୍ମ ମଧ୍ୟରେ କୃତ୍ରିମ ଓ ପ୍ରାଚୀର ସୃଷ୍ଟିକରି ଅଧିକ ପ୍ରସାରିତ କରି ଦିଆଯାଇଛି; କାରଣ ଯାବତୀୟ ବିଶିଷ୍ଟ ଧର୍ମର ପ୍ରତିଷ୍ଠାତାମାନଙ୍କର ବାସ୍ତବ ବଚନାମୃତ ତଥା ସେହି ସାମାଜିକ ପରିବେଷ୍ଟନୀ, ଯେଉଁଥିରେ କି, ଉକ୍ତ ପ୍ରତିଷ୍ଠାତାମାନଙ୍କର ଲକ୍ଷ୍ୟର ପରିପୂର୍ତ୍ତି ନିମିତ୍ତ ସେମାନଙ୍କୁ ଏକପ୍ରକାର ବାଧ୍ୟତାମୂଳକ ପରିସ୍ଥିତିରେ ଗତିକରିବାକୁ ହୋଇଥାଏ, ସେଗୁଡ଼ିକର ଏକ ନିରପେକ୍ଷ ପରୀକ୍ଷାରୁ ଏହି ସିଦ୍ଧାନ୍ତ ନିଷ୍ପନ୍ନ ହୁଏ ଯେ, ମାନବଜାତିର ଧାର୍ମିକ ଗୋଷ୍ଠୀ ଓ ସମସ୍ତ ମାନବୀୟ ବ୍ୟାପାର-ବଳୀକୁ ବିଶୃଙ୍ଖଳିତ କରିଦେବା ପାଇଁ ବିବାଦ ଓ କୁସଂସ୍କାରକୁ କୌଣସିମତେ ସମର୍ଥନ କରଯାଇନାହିଁ ।

ଆମେ ନିଜେ ଯେପରି ବ୍ୟବହାର ପାଇବାକୁ ଇଚ୍ଛାକରୁ, ଅନ୍ୟମାନଙ୍କ ପ୍ରତି ମଧ୍ୟ ତଦନୁରୂପ ବ୍ୟବହାର ପ୍ରଦର୍ଶିତ କରିବାକୁ ହେବ; ଏହି ଉପଦେଶ ସମସ୍ତ ବିଶିଷ୍ଟ ଧର୍ମମାନଙ୍କରେ ବାରମ୍ବାର ବିଭିନ୍ନ ମାର୍ଗରେ ନୀତିବାଣୀ ରୂପେ ପ୍ରଚ୍ଚରିତ ହୋଇ ଦୁଇଟି ନିର୍ଦ୍ଦିଷ୍ଟ ଦିଗରେ ଏହି ଶେଷୋକ୍ତ ପର୍ଯ୍ୟବେକ୍ଷଣକୁ ଶକ୍ତିଶାଳୀ କରିଛି । ଏହା ଉକ୍ତ ଧର୍ମ ସମୂହର ଉତ୍ପତ୍ତିକାଳ ବା ସ୍ଥାନ ନିର୍ବିଶେଷରେ ସେମାନଙ୍କ ମାଧ୍ୟମରେ ହିଁ ସମ୍ପ୍ରସାରିତ ହୋଇଥିବା ନୈତିକ ଦୃଷ୍ଟିକୋଣ ଓ ଶାନ୍ତିପ୍ରତି ପ୍ରୋତ୍ସାହନ ଦେଉଥିବା ଦିଗକୁ ଗ୍ରହଣ କରିଥାଏ । ଏହା ମଧ୍ୟ ଉକ୍ତ ଧର୍ମସମୂହର ଅପରିହାର୍ଯ୍ୟ ଗୁଣାବଳୀ ସ୍ୱରୂପ ଏକତାର ଏକ ଦିଗକୁ ନିର୍ଦ୍ଦେଶିତ କରିଥାଏ; ଯାହାକୁ ମାନବଜାତି ଏହାର ଅସଂଲଗ୍ନ ଐତିହାସିକ ଦୃଷ୍ଟିକୋଣରେ ଯଥୋଚିତ ଭବେ ଉପଲବ୍ଧି କରିବାରେ ଅକୃତକାର୍ଯ୍ୟ ହୋଇଛି ।

ଯଦି ମାନବଜାତି ନିଜର ସମଷ୍ଟିଗତ ଶୈଶବାବସ୍ଥାର ମହାନ୍ ଶିକ୍ଷାଦାତାମାନଙ୍କୁ ସେମାନଙ୍କର ଯଥାର୍ଥ ଚରିତ୍ର ମାଧ୍ୟମରେ ଏକ ସଭ୍ୟତା– ସଚେତନ ପଦ୍ଧତିର ନିୟମାକ ରୂପେ ହୃଦ୍‌ବୋଧ କରିଥା'ନ୍ତା, ତାହାହେଲେ ନିଃସନ୍ଦେହରେ ଏହା ସେମାନଙ୍କର ଉତ୍ତରୋତ୍ତର ଲକ୍ଷ୍ୟ ସମୂହର କ୍ରମବର୍ଦ୍ଧିଷ୍ଣୁ ପ୍ରଭବସ୍ତୁ ଅଶେଷ କଲ୍ୟାଣ ସାଧନ କରି ପାରିଥା'ନ୍ତା । କିନ୍ତୁ, ହାୟ, ତାହା କରିବାରେ ମାନବଜାତି ଅସଫଳ ହୋଇଛି ।

ଅଧିକାଂଶ ଦେଶରେ ଘଟୁଥିବା ଉତ୍କଟ ଧର୍ମୋନ୍ମାଦନାର ପୁନରୁତ୍‌ଥାନ ଏକ ମୁମୂର୍ଷୁ ଆଲୋଡନ ବ୍ୟତୀତ ଅନ୍ୟ କିଛି ବିବେଚନା କରଯାଇ ନପାରେ । ଏଥିସହ ଜଡ଼ିତ ଥିବା ଅଶାନ୍ତି ତଥା ବିଚ୍ଛିନ୍ନତାବାଦୀ ଅବସ୍ଥାର ପ୍ରକୃତ ଚରିତ୍ର ଏହାଦ୍ୱାରା ପ୍ରଦର୍ଶିତ ହେଉଥିବା ଆଧ୍ୟାତ୍ମିକ ଦେଉଳିଆ ଅବସ୍ଥାକୁ କେବଳ ପ୍ରମାଣିତ କରିଥାଏ । ବାସ୍ତବିକ୍, ଏହା ହେଉଛି ଧର୍ମୋନ୍ମାଦନା ଜନିତ ସାମ୍ପ୍ରତିକ ପ୍ରାଦୁର୍ଭାବର ଏକ ସର୍ବାଧିକ ଅଦ୍‌ଭୁତ ଓ ଦୁଃଖାବହ ଲକ୍ଷଣ, ଯାହାକି ପ୍ରତି କ୍ଷେତ୍ରରେ ମାନବଜାତିର ଏକତା ପ୍ରତି ଅନୁକୂଳ ହେଉଥିବା ଆଧ୍ୟାତ୍ମିକ ମୂଲ୍ୟକୁ ଯେ କେବଳ ହ୍ରାସ କରିଦିଏ, ତାହା ନୁହେଁ; ମାତ୍ର ଯେଉଁ ଧର୍ମକୁ ଏହି ଉନ୍ମାଦନା ସେବା କରିବାପାଇଁ ଇଚ୍ଛା କରୁଥାଏ, ତାହାଦ୍ୱାରା ପ୍ରାପ୍ତ ହୋଇଥିବା ଅନୁପମ ନୈତିକ କୃତିତ୍ୱକୁ ମଧ୍ୟ ଏହା ଦୁର୍ବଳ କରିଦିଏ ।

ମାନବଜାତିର ଇତିହାସରେ ଧର୍ମ ହୁଏତ ଯେତେ ମହତ୍ତ୍ୱପୂର୍ଣ୍ଣ ଶକ୍ତି ରୂପେ ରହି ଆସିଥିଲେ ମଧ୍ୟ, ଏବଂ ଉଗ୍ରବାଦୀ ଧର୍ମୀୟ ନୈଷ୍ଠିକତାର ପୁନରୁତ୍‌ଥାନ ଯେତେ ନାଟକୀୟ ହୋଇ ଆସିଥିଲେ ସୁଦ୍ଧା, ବହୁ ଦଶନ୍ଧି ଧରି ବର୍ଦ୍ଧିଷ୍ଣୁ ଜନସଂଖ୍ୟା ଦ୍ୱାରା ଧର୍ମ ଓ ଧର୍ମାନୁଷ୍ଠାନ ସମୂହ ଆଧୁନିକ ବିଶ୍ୱର ବୃହତ୍ତର ପ୍ରତିଷ୍ଠାନଗୁଡ଼ିକ ପ୍ରତି ଅପ୍ରାସଙ୍ଗିକ ବୋଧ ହେଉଛନ୍ତି । ଧର୍ମ ସ୍ଥାନରେ ସେମାନେ ହୁଏତ ଭୌତିକ ସନ୍ତୋଷ ଲଭର ସୁଖବାଦୀ ଅନ୍ୱେଷଣ ପ୍ରତି ଉନ୍ମୁଖତା ପ୍ରକାଶ କରୁଛନ୍ତି, କିମ୍ବା ସେହି ମାନବ ପ୍ରସୂତ ତତ୍ତ୍ୱକୁ ଅନୁସରଣ କରୁଛନ୍ତି, ଯାହାକି ସୁସ୍ପଷ୍ଟ କୁକର୍ମ ମଧ୍ୟରେ ନିପତିତ ହୋଇ ଆର୍ତ୍ତନାଦ

କରୁଥିବା ସଭ୍ୟତାକୁ ଉଦ୍ଧାର କରିବା ନିମିତ୍ତ ପ୍ରଣୟନ କରାଯାଇଛି । ହାୟ, ଏହି ସମସ୍ତ ତତ୍ତ୍ୱ ମାନବଜାତିର ଏକତାମୂଳକ ଧାରଣାକୁ ପ୍ରସାରିତ କରାଇବା ତଥା ବିଭିନ୍ନ ଜନସାଧାରଣଙ୍କ ମଧ୍ୟରେ ସହମତିର ଅଭିବୃଦ୍ଧିକୁ ଅଗ୍ରସର କରାଇବା ପରିବର୍ତ୍ତେ ରାଷ୍ଟ୍ରବିଶେଷପ୍ରତି ଦେବତ୍ୱ ଆରୋପ କରିବା, କିମ୍ବା ଜାତି, ଗୋଷ୍ଠୀ ବା ଶ୍ରେଣୀବିଶେଷ ପ୍ରତି ମାନବସମାଜର ଅବଶିଷ୍ଟାଂଶକୁ ଅଧୀନସ୍ଥ କରାଇବା ଅଥବା ଅଭିମତ ସମ୍ପର୍କୀୟ ସମସ୍ତ ଆଲୋଚନା ଓ ପାରସ୍ପରିକ ଯୋଗାଯୋଗକୁ ପଦଦଳିତ କରିବା ନିମିତ୍ତ ଉଦ୍ୟମ କରିବା, ଏବଂ ଅନାହାର ପ୍ରପୀଡ଼ିତ କୋଟି କୋଟି ଜନସାଧାରଣଙ୍କୁ ଏପରି ଏକ ବଜାର ବ୍ୟବସ୍ଥାର ପ୍ରଚଳନ ପ୍ରତି ନିର୍ମମଭାବେ ପରିତ୍ୟାଗ କରିବାରେ ବ୍ୟସ୍ତ ଅଛନ୍ତି, ଯାହାକି ମାନବ ସମାଜର ସଂଖ୍ୟାଗରିଷ୍ଠ ଅଂଶର ଦୁର୍ଦ୍ଦଶାକୁ ଶୋଚନୀୟ ଭାବେ ବୃଦ୍ଧିପ୍ରାପ୍ତ କରାଉଛି, ଅଥଚ ସଂଖ୍ୟାଲଘୁ ଅଂଶକୁ ସମୃଦ୍ଧିର ଏପରି ଏକ ପ୍ରାଚୁର୍ଯ୍ୟପୂର୍ଣ୍ଣ ସ୍ଥିତିରେ ଅବସ୍ଥାନ କରାଇଛି, ଯାହାକୁ ଆମ ପୂର୍ବପୁରୁଷଗଣ ବୋଧେ କ୍ୱଚିତ ସ୍ୱପ୍ନରେ କଳ୍ପନା କରିଥିବେ !

ଆମ ଯୁଗର ସାଂସାରିକ କ୍ଷେତ୍ରରେ ବ୍ୟୁତ୍ପତ୍ତିଲବ୍ଧ କରିଥିବା ଅଭିଜ୍ଞ ବ୍ୟକ୍ତିମାନଙ୍କ ଦ୍ୱାରା ସୃଷ୍ଟ ହୋଇଥିବା କୃତ୍ରିମ ଧର୍ମର ଅଭିଲେଖ କେଡ଼େ ମର୍ମନ୍ତୁଦ ! ଯେଉଁ ବିଶାଳ ଜନତାକୁ ଉକ୍ତ ଅଭିଲେଖର ପୂଜାମଣ୍ଡପରେ ଉପାସନା କରିବା ନିମିତ୍ତ ଶିକ୍ଷା ଦିଆଯାଇଅଛି, ଆଜି ସେମାନଙ୍କର ଭ୍ରମ ଧାରଣା ପୂର୍ଣ୍ଣତଃ ଦୂରୀଭୂତ ହୋଇଛି, ଏବଂ ଏହା ହିଁ ହେଉଛି ଉକ୍ତ ଅଭିଲେଖର ମୂଲ୍ୟାୟନରେ ଇତିହାସର ଆକାଟ୍ୟ ନିର୍ଣ୍ଣୟ । ଅଧିକାଂଶ ଦଶକପର୍ଯ୍ୟନ୍ତ ଏହି ମାନବ ପ୍ରସୂତ ତତ୍ତ୍ୱାବଳୀ ସେମାନଙ୍କର ପ୍ରଣେତାମାନଙ୍କୁ ନିରନ୍ତର ଅବିସମ୍ବାଦିତ ଶକ୍ତିର ପ୍ରଭୁରୂପେ ପରିଣତ କରିଆସିଛନ୍ତି । କିନ୍ତୁ ସେଗୁଡ଼ିକର ସିଦ୍ଧାନ୍ତ ଫଳରେ ଯେଉଁ ପରିଣତି ସୃଷ୍ଟି ହୋଇଛି, ତାହା ଏପରି ସାମାଜିକ ତଥା ଅର୍ଥନୈତିକ ବ୍ୟାଧିହୋଇ ପଡ଼ିଛି ଯେ, ବିଂଶ ଶତାବ୍ଦୀର ଏହି ଅନ୍ତିମ କାଳରେ ଆମ ଜଗତର ଯାବତୀୟ କ୍ଷେତ୍ରକୁ ଦୂଷିତକରି ଦେଇଛି । ଏହି ବ୍ୟାଧିଗୁଡ଼ିକ କାରଣରୁ ସୃଷ୍ଟି ହୋଇଥିବା ଭୌତିକ ଯାତନା ହେଉଛି, ଏକ ଆଧ୍ୟାତ୍ମିକ

ଅପଚୟ, ଏବଂ ଏହି ଅପଚୟ ସମସ୍ତ ରାଷ୍ଟ୍ରର ଜନସାଧାରଣଙ୍କ ନିଷ୍ଠୁରତା ମଧ୍ୟରେ ପ୍ରତିବିମ୍ବିତ ହୋଇ ଉଠୁଛି । ଏହା କୋଟି କୋଟି ବଞ୍ଚିତ ଓ ନିପୀଡ଼ିତ ବ୍ୟକ୍ତିମାନଙ୍କର ହୃଦୟରେ ପ୍ରକାଶିତ ହେବାକୁ ଥିବା ଆଶାର ବହ୍ନିକୁ ନିର୍ବାପିତ କରି ଦେଉଛି ।

ବର୍ତ୍ତମାନ ସେହି ସମୟ ଉପଗତ ହୋଇଛି, ଯେତେବେଳେ କି, ସମାଜର ଜଡବାଦୀ ତତ୍ତ୍ୱକୁ ପ୍ରଚାର କରୁଥିବା ବ୍ୟକ୍ତିମାନଙ୍କୁ ସେମାନଙ୍କର ନୀତିବାଦୀ ସେବକଭବର ହିସାବ ଦେବାକୁ ପଡ଼ିବ, ହୁଏତ ସେମାନେ ପ୍ରାଚ୍ୟ ବା ପାଶ୍ଚାତ୍ୟ ଦେଶର ହୁଅନ୍ତୁ, କିମ୍ବା ସେମାନେ ପୁଞ୍ଜିବାଦ୍ ବା ସମାଜବାଦର ହୁଅନ୍ତୁ । ସେମାନଙ୍କ ଜଡ଼ବାଦୀ ତତ୍ତ୍ୱଦ୍ୱାର ପ୍ରତିଶ୍ରୁତ ହୋଇଥିବା "ନୂତନ ଜଗତ" କେଉଁଠି ? ଯେଉଁ "ଆନ୍ତଃରାଷ୍ଟ୍ରୀୟ ଶାନ୍ତିର ଆଦର୍ଶ" ପ୍ରତି ସେମାନେ ସେମାନଙ୍କର ନୈଷ୍ଠିକତା ପ୍ରଦର୍ଶିତ କରିଥାନ୍ତି, ତାହା କେଉଁଠି ବିଦ୍ୟମାନ ? ଏହି ଗୋଷ୍ଠୀ ସେହି ଜାତି, ବା କୌଣସି ଏକ ନିର୍ଦ୍ଦିଷ୍ଟ ଶ୍ରେଣୀର ସ୍ୱାର୍ଥ ସାଧନ ଫଳରେ ସୃଷ୍ଟିଲାଭ କରିଥିବା ସାଂସ୍କୃତିକ କୃତିତ୍ୱର ନବରାଜ୍ୟ ପ୍ରତି ପ୍ରତ୍ୟକ୍ଷମାର୍ଗ କାହିଁ ? କାହିଁକି ବିଶ୍ୱ ଜନତାର ସଂଖ୍ୟାଗରିଷ୍ଠାଂଶ ଅନାହାର ତଥା ଦୈନ୍ୟ ଆଡ଼କୁ ଗଭୀର ଭବେ ନିମଜ୍ଜିତ ହୋଇ ଯାଉଛନ୍ତି, ଅଥଚ ※ ଫାରୋ, ସିଜାର୍ ବା ଏପରିକି ଉନବିଂଶ ଶତାବ୍ଦୀର ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କର କଳ୍ପନାତୀତ ଧନ ଆଜି ମାନବୀୟ ବ୍ୟାପାରବଜାରର ମୀମାଂସକମାନଙ୍କ ହାତରେ ଠୁଳହୋଇ ରହିଛି ?

※ ଫାରୋ (Pharaohs) ପ୍ରାଚୀନ ମିଶରୀୟ ଧନଶାଳୀ ସମ୍ରାଟଗଣ

ସିଜାର୍ସ (Caesars) ପ୍ରାଚୀନ ରୋମ୍ ସାମ୍ରାଜ୍ୟର ନିରଙ୍କୁଶ ଶାସକ ତଥା ଋଷ୍ ଓ ଜର୍ମାନୀ ପ୍ରଭୃତି ରାଜ୍ୟର ପ୍ରାଚୀନ ସମ୍ରାଟଗଣ

ବିଶେଶତଃ, ଏହି ସବୁ ତତ୍ତ୍ୱାବଳୀ ମଧ୍ୟରେ ଭୌତିକବାଦୀ ଅନୁସରଣର ଯେଉଁ ମାହାତ୍ମ୍ୟ ବର୍ଣ୍ଣିତ ହୋଇଛି, ତାହା ଏହି ସମସ୍ତ ତତ୍ତ୍ୱର ପୂର୍ବସ୍ଥପରି ତଥା ସାଧାରଣ ବିଶେଷତ୍ୱ ହୋଇରହିଛି, ଏବଂ ଆମେ ବର୍ତ୍ତମାନ ଏହା ମଧ୍ୟରୁ ସେହି ମୂଳ କାରଣଗୁଡ଼ିକୁ ଖୋଜି ବାହାରି କରିଛୁ, ଯାହାକି, "ମାନବଜାତି ଅସଂଶୋଧନୀୟ ଭବେ ସ୍ୱାର୍ଥପର ଓ କଳହପ୍ରିୟ," ଏହି ମିଥ୍ୟାତତ୍ତ୍ୱକୁ ପରିପୁଷ୍ଟ କରିଆସିଛି । ତେଣୁ ଏହି ପରିସ୍ଥିତିରେ ଆମର କର୍ତ୍ତବ୍ୟ ହେଉଛି ଯେ, ଆମ ଭବୀ ବଂଶଧରମାନଙ୍କ ନିମିତ୍ତ ଉପଯୋଗୀ ହୋଇଥିବା ଏକ ନବବିଶ୍ୱର ନିର୍ମାଣ ଉପଲକ୍ଷେ ଆମକୁ ପ୍ରଥମେ ମୂଳଦୁଆକୁ ଅବଶ୍ୟ ପରିଷ୍କୃତ କରି ରଖିବାକୁ ପଡ଼ିବ ।

ଅଭିଜ୍ଞତା ଦ୍ୱାରା ଦେଖାଯାଉଛି ଯେ, ମାନବଜାତିର ଆବଶ୍ୟକତାକୁ ପରିପୂର୍ଣ୍ଣ କରିବାରେ ଅକୃତକାର୍ଯ୍ୟ ହୋଇଥିବା ଉପରୋକ୍ତ ଜଡବାଦୀ ଆଦର୍ଶ ଗୁଡ଼ିକ ଏକ ସାଧୁତାପୂର୍ଣ୍ଣ ପ୍ରାପ୍ତିସ୍ୱୀକାରକୁ ଗ୍ରହଣକରି କୁହନ୍ତି କି– "ଏହି ଯନ୍ତ୍ରଣାଜର୍ଜରିତ ସମସ୍ୟାବଳୀର ସମାଧାନ କରିବାକୁ ହେଲେ ଏକ ନୂତନ ଅଧ୍ୟବସାୟ କରିବାକୁ ହେବ ।" ସମାଜକୁ ପରିବ୍ୟାପ୍ତକରି ରହିଥିବା ଦୟନୀୟ ଅବସ୍ଥା ସମସ୍ତଙ୍କ ଲାଗି ଏକ ସାଧାରଣ ଅସଫଳତା ସମ୍ପର୍କରେ ପୂର୍ବାଭାସ ଦେଉଛି । ଏହା ଏପରି ଏକ ପରିବେଶ, ଯାହାକି ପ୍ରତ୍ୟେକ ଦେଶରେ ଦୁଃଖର ଆବେଷ୍ଟନୀକୁ ମୁକ୍ତ କରିବା ପରିବର୍ତ୍ତେ ବରଂ ଉତ୍ତେଜିତ କରିବାରେ ତତ୍ପର ହୋଇଉଠିଛି । ସୁସ୍ପଷ୍ଟ ଭବେ କହିବାକୁ ଗଲେ, ଏହାର ନିରାକରଣ ନିମିତ୍ତ ଏକ ତୁରନ୍ତ ପ୍ରତିଶେଧକ ବ୍ୟବସ୍ଥା ଅତ୍ୟନ୍ତ ଆବଶ୍ୟକ । ପ୍ରାଥମିକଭବେ ଏହା ଏକ ନିର୍ଦ୍ଦିଷ୍ଟ ମନୋନୟନର ବିଷୟ ହୋଇରହିଛି ଯେ, ମାନବଜାତି ଅତି ପ୍ରାଚୀନ ଜୀର୍ଣ୍ଣଧାରଣା ତଥା ଅକରଣୀୟ ଭ୍ରାନ୍ତ ସିଦ୍ଧାନ୍ତଗୁଡ଼ିକର ବଶବର୍ତ୍ତୀ ହୋଇ ବିପଥଗାମୀ ହେବ, ବା ଏହାର ନେତୃବୃନ୍ଦ ପାରସ୍ପରିକ ତତ୍ତ୍ୱାବଳୀପ୍ରତି ଦୃଷ୍ଟି ନଦେଇ ଯଥା ଶୀଘ୍ର ଆଗେଇ ଆସିବେ, ଏବଂ ସଂକଳ୍ପବଦ୍ଧ ଆଗ୍ରହ ସହ ଏହାର ଯଥାର୍ଥ ସମାଧାନ ନିମିତ୍ତ ଏକ ମିଳିତ ଅନୁସନ୍ଧାନରେ ଏକତ୍ର ପରାମର୍ଶ ଗ୍ରହଣ କରିବେ ?

ଯେଉଁ ବ୍ୟକ୍ତିମାନେ ମାନବସମାଜର ଭବିଷ୍ୟତ ଚିନ୍ତା କରନ୍ତି, ସେମାନେ ଏହି ଉପଦେଶ ଉପରେ ଉତ୍ତମରୂପେ ଅନୁଧ୍ୟାନ କରନ୍ତୁ : "ଯଦି ଚିରପୋଷିତ ଆଦର୍ଶ ଓ ଯୁଗୋପଯୋଗୀ ଅନୁଷ୍ଠାନଗୁଡ଼ିକ କେତେକ ସାମାଜିକ ଭ୍ରାନ୍ତଧାରଣା ଓ ସମସାମୟିକ ଆଧ୍ୟାତ୍ମିକଧାରସମୂହ ମାନବଜାତିର କଲ୍ୟାଣ ସାଧନରେ ବ୍ରତୀହୋଇ ପାରୁନାହାନ୍ତି, କିମ୍ବା ଯଦି ମାନବଜାତିର ଅବିରତ ବିକଶଶୀଳ ଆବଶ୍ୟକତାକୁ ସେମାନେ ଆଉ ପରିତୃପ୍ତ କରିପାରୁନାହାନ୍ତି, ତାହାହେଲେ ସେଗୁଡ଼ିକ ଲୋପ ପାଇଯାଉ, ଏବଂ ବିସ୍ମୃତତତ୍ତ୍ୱ ତଥା ନାରକୀୟ ଉପକଣ୍ଠକୁ ଅପସାରିତ ହୋଇଯାଉ । କାହିଁକି ସେଗୁଡ଼ିକ ସାମାଜିକ ପରିବର୍ତ୍ତନ ଓ ବିଘଟନଜନୀତ ଅପରିବର୍ତ୍ତନୀୟ ନିୟମପ୍ରତି ବଶ୍ୟତା ସ୍ୱୀକାର କରିଥିବା ବିଶ୍ୱରେ ପ୍ରତିଟି ମାନବୀୟ ଅନୁଷ୍ଠାନକୁ ପରାଭୂତ କରି ରଖିଥିବା ଅଧୋଗତିରୁ ବଞ୍ଚିତ ହେବେ ? ବୈଧାନିକ ମାନଦଣ୍ଡ, ରାଜନୈତିକ ତଥା ଅର୍ଥନୈତିକ ତତ୍ତ୍ୱାବଳୀ ମାନବଜାତିର ସ୍ୱାର୍ଥଗୁଡ଼ିକୁ ସମ୍ୟକ୍‌ଭାବେ ରକ୍ଷାକରିବା ନିମିତ୍ତ ଉଦ୍ଦିଷ୍ଟ ହୋଇଥା'ନ୍ତି, ମାତ୍ର କୌଣସି ଏକ ବିଶିଷ୍ଟ ନିୟମ ବା ତତ୍ତ୍ୱର ସଂହତି ରକ୍ଷାଲାଗି ମାନବସମାଜକୁ କ୍ରୁଶବିଦ୍ଧ ହେବାକୁ ପଡ଼ିନଥାଏ ।

# ଦ୍ୱିତୀୟ

ଆଣବିକ ଅସ୍ତ୍ରଗୁଡ଼ିକୁ ବାଯ୍ୟାପ୍ତ କରି, ବିଷାକ୍ତ ବାଷ୍ପ–ପ୍ରୟୋଗକୁ ନିଷେଧ କରି କିମ୍ବା ବୀଜାଣୁଯୁଦ୍ଧକୁ ଅବୈଧାନିକ ଘୋଷଣା କରି ଯୁଦ୍ଧର ମୂଳକାରଣଗୁଡ଼ିକୁ ଦୂରୀଭୂତ କରଯାଇ ପାରିବନାହିଁ । କିନ୍ତୁ ଏହି ମହତ୍ତ୍ୱପୂର୍ଣ୍ଣ ବ୍ୟାବହାରିକ ଉପାୟ ସ୍ୱଷ୍ଟରୂପେ ଶାନ୍ତିପ୍ରତିଷ୍ଠାର ଅଂଶ ସ୍ୱରୂପ ହେଲେ ମଧ୍ୟ ନିଜ ନିଜ ମଧ୍ୟରେ ସେଗୁଡ଼ିକ ଲୋକଦେଖାଣିଆ ରୂପେ କାମ କରିବା ହେତୁ କୌଣସି ସ୍ଥାୟୀ ପ୍ରଭବ ପକାଇ ପାରନ୍ତିନାହିଁ । ଏସବୁ ସତ୍ତ୍ୱେ, ଜନ-ସାଧାରଣ ଏତେ ଧୂର୍ତ୍ତ ଯେ, ସେମାନେ ଅନ୍ୟପ୍ରକାର ପନ୍ଥା ବାହାର କରି ଜଣେ ଅନ୍ୟ ଜଣକ ଉପରେ ପ୍ରଭୁତ୍ୱ ଓ ଶ୍ରେଷ୍ଠତ୍ୱ ବଜାୟରଖିବା ପାଇଁ ଖାଦ୍ୟ, କଞ୍ଚାମାଲ, ଅର୍ଥ, ଶିଳ୍ପଗତ ସାମର୍ଥ୍ୟ, ଆଦର୍ଶବାଦ୍ ଓ ଆତଙ୍କବାଦ୍ ପ୍ରୟୋଗ କରି ପରସ୍ପରକୁ ଧ୍ୱଂସ କରିଥାନ୍ତି । ମାନବଜାତିର ସମସ୍ୟାବଳୀରେ ସମ୍ପ୍ରତି ଦେଖାଦେଇଥିବା ପ୍ରକାଣ୍ଡ ବିଚ୍ୟୁତି, ରାଷ୍ଟ୍ରଗୁଡ଼ିକ ମଧ୍ୟରେ ଚାଲୁ ରହିଥିବା କଳହ ଓ ମତ ପାର୍ଥକ୍ୟର ଯଥାଯଥ ସମାଧାନ କରିପାରୁ ନାହିଁ । ତେଣୁ ଏକ ସର୍ବୋତ୍କୃଷ୍ଟ ସାର୍ବଜନୀନ ପଦ୍ଧତିକୁ ନିୟୋଜିତ କରିବାକୁ ହେବ ।

ନିଶ୍ଚିତଭବେ କହିବାକୁ ଗଲେ, ସମସ୍ୟାର ବିଶ୍ୱବ୍ୟାପୀ ଚରିତ୍ରକୁ ବୋଧଗମ୍ୟ କରିବାରେ ରାଷ୍ଟ୍ରୀୟ ନେତୃବୃନ୍ଦ ସେମାନଙ୍କର ଅକ୍ଷମତାକୁ ପ୍ରକାଶ କରୁଛନ୍ତି ବୋଲି କହିବା ନିରର୍ଥକ । କାରଣ ସେମାନଙ୍କ ସହ ଦୈନନ୍ଦିନ ସମ୍ମୁଖୀନ ହେଉଥିବା ପ୍ରବଳତର ସମସ୍ୟାବଳୀ ଏହାର ସୁସ୍ପଷ୍ଟ ପ୍ରାମାଣିକତାକୁ ମଧ୍ୟ ବହନ କରିଥାନ୍ତି । ସେମାନଙ୍କର ପୂର୍ବୋକ୍ତ ଗୁରୁତର ସମସ୍ୟା ରୂପକ ଆବଶ୍ୟକତା ଗୁଡ଼ିକର ପରିପୂର୍ତ୍ତି ପାଇଁ ସେମାନଙ୍କ ଅକ୍ଷମତାର ଯେକୌଣସି ସମ୍ଭାବନାକୁ ଦୂରୀଭୂତ କରିବା ଉଦ୍ଦେଶ୍ୟରେ ଅଧିକାଂଶ ଚିନ୍ତାଶୀଳ ତଥା ବିଜ୍ଞବ୍ୟକ୍ତିଗଣ ଏବଂ ମିଳିତ ଜାତିସଂଘର ବିଭିନ୍ନ ବିଭାଗଦ୍ୱାରା ଅଧ୍ୟୟନ ଓ ସମାଧାନ ନିରନ୍ତର ଅଭିବୃଦ୍ଧି ଲାଭକରୁଛି, ତଥାପି, ସେଥିରେ ମଧ୍ୟ ଆଗ୍ରହର ଅଭବ ପରିଲକ୍ଷିତ ହେଉଛି । ଏହାକୁ ଅବଶ୍ୟ ସତର୍କତାର ସହ ପରୀକ୍ଷା

କରିବାକୁ ହେବ । ଆମେ ପୂର୍ବରୁ ଉଲ୍ଲେଖ କରିଛୁ ଯେ, ଉକ୍ତ ନିଷ୍କ୍ରିୟତା ଯେଉଁ ମିଥ୍ୟା ତତ୍ତ୍ୱର ଦୃଢ଼ଧାରଣାର ଅତଳ ଗର୍ଭରେ ବଦ୍ଧମୂଳ ହୋଇ ରହିଥାଏ, ତାହା ହେଉଛି : ମାନବଜାତି ଅପରିହାର୍ଯ୍ୟତଃ କଳହପ୍ରିୟ ଓ ସ୍ୱାର୍ଥପର । ଆଉମଧ୍ୟ ଏହି କାରଣରୁ ଏହା ବିଶ୍ୱବ୍ୟବସ୍ଥାର କଲ୍ୟାଣ ନିମିତ୍ତ ରାଷ୍ଟ୍ରୀୟ ସ୍ୱାର୍ଥକୁ ଗୌଣ ବିଗ୍ରହ କରିବାରେ ଅନିଚ୍ଛା ପ୍ରକାଶ କରୁଛି, ତଥା ଏକ ମିଳିତ ବିଶ୍ୱକର୍ତ୍ତୃତ୍ୱ ପ୍ରତିଷ୍ଠା କରିବାରେ ମଧ୍ୟ ଦୂରଗାମୀ ଆଭସଗୁଡ଼ିକ ପ୍ରତି ସାହସରସହ ସମ୍ମୁଖୀନ ହେବାଲାଗି ବିତୃଷ୍ଣାଭବ ପ୍ରକାଶ କରୁଛି । ଯେଉଁ ନୂତନ ବ୍ୟବସ୍ଥା ମଧ୍ୟରେ ନିରକ୍ଷର ତଥା ଦଳିତ ଜନତା ଶାନ୍ତି ସଙ୍ଗତି ଓ ସମୃଦ୍ଧି ବଳରେ ମାନବସମାଜରେ ବସବାସ କରିପାରନ୍ତେ, ସେହି ବ୍ୟବସ୍ଥା ପ୍ରତି ସେ।ନଙ୍କର ଅଭିପ୍ରାୟକୁ ସ୍ପଷ୍ଟରୂପେ ବ୍ୟକ୍ତକରିବା ଉଦ୍ଦେଶ୍ୟରେ ଉପରୋକ୍ତ ଆଗ୍ରହର ନିଷ୍କ୍ରିୟତା ସେମାନଙ୍କୁ ଅସମର୍ଥ କରୁଛି ।

ବିଶେଷତଃ, ଦ୍ୱିତୀୟ ବିଶ୍ୱମହାସମର ପରଠାରୁ ବିଶ୍ୱବ୍ୟବସ୍ଥାପ୍ରତି ଗୃହୀତ ହୋଇଥିବା କେତେକ ପରୀକ୍ଷାମୂଳକ ପଦକ୍ଷେପ ଆଶାନୁରୂପ ଆଭସ ପ୍ରଦାନ କରୁଛି । ପାରସ୍ପରିକ ସ୍ୱାର୍ଥବିଷୟକ କାର୍ଯ୍ୟକଳାପରେ ସହଯୋଗ କରିବା ଉଦ୍ଦେଶ୍ୟରେ ଯେଉଁ ସମ୍ପର୍କ ସାମର୍ଥ୍ୟ ପ୍ରଦାନ କରୁଥାଏ, ତାହାକୁ ବାହ୍ୟ-ଆଗ୍ରହସଙ୍ଗତ କରିବାପାଇଁ ରାଷ୍ଟ୍ରଗୁଡ଼ିକର କ୍ରମବର୍ଦ୍ଧିଷ୍ଣୁ ଆଗ୍ରହରୁ ଏହି ସୂଚନା ମିଳୁଛି ଯେ, ପରିଶେଷରେ ସମସ୍ତରାଷ୍ଟ୍ର ଉକ୍ତ ନିଷ୍କ୍ରିୟତାକୁ ପରାଭୂତ କରି-ପାରିବେ । ଦକ୍ଷିଣ-ପୂର୍ବ ଏସୀୟ ରାଷ୍ଟ୍ରସଂଘ, (Association of South-East Asian Nations) କାରବୀୟ ଗୋଷ୍ଠୀ (Caribbean Community) ଓ ସାଧାରଣ ବଜାର, (Common Market) କେନ୍ଦ୍ର ଆମେରିକୀୟ ସାଧାରଣ ବଜାର, (Central American Common Market) ପାରସ୍ପରିକ ଅର୍ଥନୈତିକ ସହାୟକ ପରିଷଦ, (Council of Mutual Economic Assistance) ଇଉରୋପୀୟ ଗୋଷ୍ଠୀ, (European Community) ଆରବ ରାଷ୍ଟ୍ରସଂଘ (League of Arab

States) ଆଫ୍ରିକୀୟ ଐକ୍ୟ ସଂଗଠନ, (Organisation of African Unity) ଆମେରିକୀୟ ରାଷ୍ଟ୍ରସଂଗଠନ (Organisation of American States) ଦକ୍ଷିଣ ପ୍ରଶାନ୍ତ ମହାସାଗରୀୟ ଫୋରମ୍ (South Pacific Forum) ପ୍ରଭୃତି ଅନୁଷ୍ଠାନଗୁଡ଼ିକଦ୍ୱାରା ପ୍ରତିନିଧିତ୍ୱ କରୁଥିବା ମିଳିତ ପ୍ରଚେଷ୍ଟା ବିଶ୍ୱବ୍ୟବସ୍ଥା ପ୍ରତି ମାର୍ଗ ପ୍ରସ୍ତୁତ କରୁଛି ।

ଏହି ବିଶ୍ୱର କେତେକ ବଦ୍ଧମୂଳ ସମସ୍ୟାବଳୀ ଉପରେ କ୍ରମବର୍ଦ୍ଧିଷ୍ଣୁ ଧ୍ୟାନ କେନ୍ଦ୍ରୀଭୂତ ହେବା ଅନ୍ୟ ଏକ ଆଶାଜନକ ସଙ୍କେତ । ମିଳିତ ଜାତିସଂଘର ସୁସ୍ପଷ୍ଟ ଦୋଷତ୍ରୁଟି ସତ୍ତ୍ୱେ, ଏହି ଅନୁଷ୍ଠାନଦ୍ୱାରା ଗୃହୀତ ହୋଇଥିବା ରାଜିଶରୁ ଅଧିକ ଘୋଷଣାନାମା ଓ ଚୁକ୍ତିନାମା, ଏପରିକି ଯେଉଁଠାରେ ସରକାରୀ ଯୋଜନାଗୁଡ଼ିକ ଆଶାନୁରୂପ ସଫଳତା ହାସଲ କରିପାରିନାହିଁ, ସେଠାରେ ବାସକରୁଥିବା ଜନସାଧାରଣଙ୍କୁ ଜୀବନର ଏକ ସ୍ଥାୟୀ ଚେତନାଶକ୍ତି ଦାନ କରିଛି । ମାନବିକତା ଅଧିକାର ସମ୍ପର୍କୀୟ ସାର୍ବଜନୀନ ଘୋଷଣାନାମା; ଗଣହତ୍ୟା ଅପରାଧ ବିରୁଦ୍ଧରେ ନିଷେଧାଦେଶ ଓ ଦଣ୍ଡାଦେଶ ଉପରେ ଗୃହୀତ ଚୁକ୍ତିନାମା, ଏବଂ ଜାତି, ଲିଙ୍ଗ ଓ ଧର୍ମଭାବନା ଉପରେ ଆଧାରିତ ସମସ୍ତ ପ୍ରକାର ପାର୍ଥକ୍ୟର ଦୂରୀକରଣ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ହୋଇଥିବା ପଦକ୍ଷେପ ଗୁଡ଼ିକ, ଶିଶୁମାନଙ୍କ ଅଧିକାରପ୍ରତି ନୈତିକ ସମର୍ଥନ, ନିର୍ଯ୍ୟାତନା ପ୍ରପୀଡ଼ିତ ସମସ୍ତ ବ୍ୟକ୍ତିମାନଙ୍କୁ ସୁରକ୍ଷାପ୍ରଦାନ, ଅନାହାର ତଥା ମନ୍ଦପୁଷ୍ଟିର ବିଲୋପ-ସାଧନ, ମାନବଜାତିର ଉପକାର ଓ ଶାନ୍ତିପ୍ରତିଷ୍ଠା ଉଦ୍ଦେଶ୍ୟରେ ବିଜ୍ଞାନ ତଥା ପ୍ରଯୁକ୍ତି ବିଦ୍ୟାର ଉନ୍ନତବିନିଯୋଗ, ପ୍ରଭୃତି ପଦକ୍ଷେପଗୁଡ଼ିକ ସାହସିକତାର ସହ କାର୍ଯ୍ୟକାରୀ ହୋଇ ସମ୍ପ୍ରସାରିତ ହେଲେ, ଏହା ସେହି ସମୟକୁ ମାନବଜାତିକୁ ନେଇଯିବ, ଯେତେବେଳେ ସାମରିକ କୋନ୍ଦଳ ଆନ୍ତଃରାଷ୍ଟ୍ରୀୟ ସମ୍ପର୍କ ଉପରେ ପ୍ରଭୁତ୍ୱ ବିସ୍ତାର ଶକ୍ତିକୁ ହରାଇ ବସିଥିବ । ଉକ୍ତ ଘୋଷଣାନାମା ଓ ଚୁକ୍ତିନାମା ଦ୍ୱାରା ଆହୂତ ହୋଇଥିବା ସମସ୍ୟାବଳୀର ତାତ୍ପର୍ଯ୍ୟ ଉପରେ କୌଣସି ଗୁରୁତ୍ୱ ଦେବା ନିଷ୍ପ୍ରୟୋଜନ । ତଥାପି, ବିଶ୍ୱଶାନ୍ତି ପ୍ରତିଷ୍ଠାପ୍ରତି ଏହିପରି କେତେକ

ମୁଖ୍ୟ ସମସ୍ୟା ସେଗୁଡ଼ିକର ତୁରନ୍ତ ପ୍ରାସଙ୍ଗିକତା କାରଣରୁ, ଅଧିକ ମନ୍ତବ୍ୟ ଗ୍ରହଣ କରିବା ନିମିତ୍ତ ଯୋଗ୍ୟ ବିବେଚିତ ହୋଇଥାଏ ।

ବର୍ଣ୍ଣବିଦ୍ୱେଷଭାବ ଅତ୍ୟନ୍ତ ଅନିଷ୍ଟକର, ତଥା ଅନ୍ୟତମ ସ୍ଥାୟୀ ଦୁର୍ଗୁଣ ରୂପେ ଶାନ୍ତି ପ୍ରତିଷ୍ଠାପ୍ରତି ଏକ ବୃହତ୍ ପ୍ରତିବନ୍ଧକ ହୋଇଛି । ଏହାର ପ୍ରୟୋଗ ଯେକୌଣସି ଆଳରେ ଅନୁମୋଦିତ ହେଲେ ମଧ୍ୟ ତାହା ମାନବିକ ମହତ୍ତ୍ୱର ଉଲ୍ଲଙ୍ଘନ ରୂପକ ଅତ୍ୟନ୍ତ ବିଭତ୍ସତାକୁ ପ୍ରୋତ୍ସାହିତ କରିଥାଏ । ବର୍ଣ୍ଣବିଦ୍ୱେଷଭାବ ମାନବପ୍ରାଣୀର ଅନନ୍ତ ପ୍ରଚ୍ଛନ୍ନଶକ୍ତିକୁ ଉନ୍ମୋଚିତ ହେବାରେ ବିଳମ୍ବିତ କରିଦିଏ, ଏହାକୁ ପ୍ରୟୋଗ କରୁଥିବା ବ୍ୟକ୍ତିମାନଙ୍କୁ ବ୍ୟଭିଚାରୀ କରିଦିଏ, ଏବଂ ମାନବୀୟ ପ୍ରଗତିକୁ ବ୍ୟର୍ଥ କରିଦିଏ । ଏହି ସମସ୍ୟାର ସମାଧାନ କରିବାକୁ ହେଲେ, ଯଥାର୍ଥ ବୈଜ୍ଞାନିକ ପଦ୍ଧତି ମାଧ୍ୟମରେ ମାନବଜାତିର ଏକତ୍ୱ ପ୍ରତି ସ୍ୱୀକୃତି ପ୍ରଦାନ କରିବା ସଙ୍ଗେସଙ୍ଗେ ଏହି ପଦ୍ଧତିକୁ ସାର୍ବଜନୀନ ଭାବେ ଦୃଢ଼ତାର ସହ ସମର୍ଥନ କରିବାକୁ ହେବ ।

ଧନୀ ଓ ଦରିଦ୍ରମାନଙ୍କ ମଧ୍ୟରେ ରହିଥିବା ଅତିରିକ୍ତ ପ୍ରଭେଦ ତୀବ୍ର ଯାତନାର ଉତ୍ସହୋଇ କାର୍ଯ୍ୟତଃ ପୃଥିବୀକୁ ସମର ନିକଟବର୍ତ୍ତୀ କରି ଏକ ଅସ୍ଥିର ବାତାବରଣ ମଧ୍ୟରେ ନିକ୍ଷେପ କରିଦେଇଛି । ଅଳ୍ପ କେତେକ ସମାଜ ଏହି ପରିସ୍ଥିତିକୁ ସଫଳତାର ସହ ନିୟନ୍ତ୍ରିତ କରିପାରିଛନ୍ତି । ଏହାର ସମାଧାନ ଆଧ୍ୟାତ୍ମିକ, ନୈତିକ ତଥା ବ୍ୟାବହାରିକ ଆହ୍ୱାନର ମିଳିତ ବିନିଯୋଗକୁ ଆବଶ୍ୟକ କରିଥାଏ । ଅର୍ଥନୈତିକ ତଥା ସ୍ୱାର୍ଥିକ ବାଦାନୁବାଦରୁ ବଞ୍ଚିତ ହୋଇ ମୌଳିକନୀତିର ବର୍ଣ୍ଣାଳୀ ମଧ୍ୟରୁ ଆଗତ ହୋଇଥିବା ଦକ୍ଷ-ବ୍ୟକ୍ତିମାନଙ୍କର ପରାମର୍ଶକୁ ଅପରିହାର୍ଯ୍ୟଭାବେ ଗ୍ରହଣ କରିବାକୁ ହେବ; ଏବଂ ନିଶ୍ଚିତରୂପେ ଉକ୍ତ ସମସ୍ୟା ସମ୍ପର୍କରେ ଏକ ନୂତନ ଦୃଷ୍ଟିକୋଣ ଗ୍ରହଣକରିବାକୁ ହେବ; ଆଉମଧ୍ୟ ଯେଉଁ ଜନସାଧାରଣ ପ୍ରତ୍ୟକ୍ଷଭାବେ କ୍ଷତିଗ୍ରସ୍ତ ହେଉଛନ୍ତି ସେମାନଙ୍କୁ ଏଥିସହ ସଂଶ୍ଳିଷ୍ଟକରି ତୁରନ୍ତ ସମାଧାନରେ ପହଞ୍ଚିବାକୁ ହେବ ।

ଏହା କେବଳ ଧନ ଓ ଦାରିଦ୍ର୍ୟର ଅତିରିକ୍ତତାକୁ ମୂଳୋତ୍ପାଟିତ କରିବା ନିମିତ୍ତ ଏକ ଆବଶ୍ୟକୀୟ ସମସ୍ୟା ନହୋଇ ଏପରି ଆଧ୍ୟାତ୍ମିକ ମୌଳିକ ସତ୍ୟୋକ୍ତି ସହ ସମ୍ବନ୍ଧ ସ୍ଥାପନ କରିଥାଏ, ଯାହାକୁ ଉପଲବ୍ଧି କରିବାଦ୍ୱାରା ଏକ ନୂତନ ସାର୍ବଜନୀନ ମନୋବୃତ୍ତି ଉତ୍ପାଦିତ କରିପାରିବ । ଏପରି ଏକ ମନୋବୃତ୍ତିକୁ ପୋଷଣ କରିବା ହେଉଛି ସମାଧାନର ଏକ ବୃହତ ଅଂଶ ।

ଉତ୍ଶୃଙ୍ଖଳ ଜାତୀୟତାବାଦକୁ ଏକ ସୁସ୍ଥ ତଥା ବୈଧାନିକ ଦେଶ ପ୍ରୀତିଠାରୁ ପୃଥକ୍ ରହି ବ୍ୟାପକ ଆନୁଗତ୍ୟ ମଧ୍ୟକୁ ମାର୍ଗ ପ୍ରସ୍ତୁତ କରିବାକୁ ହେବ । ବାହା'ଉଲ୍ଲାହ୍‌ଙ୍କ ଉକ୍ତିରେ "ପୃଥିବୀ ହେଉଛି ଏକ ଦେଶ ମାତ୍ର, ଏବଂ ମାନବଜାତି ଏହାର ନାଗରିକ ।" ବିଶ୍ୱ ନାଗରିକତାର ଧାରଣା ହେଉଛି, ଅବିସମ୍ବାଦିତ ପାରସ୍ପରିକ ନିର୍ଭରଶୀଳତା ମାଧ୍ୟମରେ ସମଗ୍ର ବିଶ୍ୱକୁ ଏକ ପ୍ରତିବେଶୀ ଆଡକୁ ସଙ୍କୁଚିତ ହୋଇ ଆସିବାର ପ୍ରତ୍ୟକ୍ଷ ପରିଣତି । ସମଗ୍ର ବିଶ୍ୱକୁ ପ୍ରେମ କରିବା କାର୍ଯ୍ୟ କଦାପି ଜଣେ ବ୍ୟକ୍ତିର ସ୍ୱଦେଶପ୍ରୀତିକୁ ଦୂରକୁ ଠେଲି ଦିଏନାହିଁ । ସମଗ୍ର ଜନତାର ସୁବିଧାସୁଯୋଗକୁ ଉନ୍ନତ କରିବା ଫଳରେ ବିଶ୍ୱସମାଜର ଆଂଶିକ ସୁବିଧାସୁଯୋଗ ଉତ୍କୃଷ୍ଟତର ରୂପେ କାର୍ଯ୍ୟକାରୀ ହୋଇଥାଏ । ଜନସାଧାରଣଙ୍କ ମଧ୍ୟରେ ପାରସ୍ପରିକ ପ୍ରୀତି ଓ ସହତିଜ୍ଞାନକୁ ଯେଉଁ ଆନ୍ତଃରାଷ୍ଟ୍ରୀୟ ଅନୁଷ୍ଠାନର କାର୍ଯ୍ୟକଳାପ ପରିପୁଷ୍ଟ କରିଥାଏ, ତାହାର ଅଭିବୃଦ୍ଧି ବହୁଳଭାବେ ଆବଶ୍ୟକବୋଧ ହେଉଛି ।

ସମଗ୍ର ଇତିହାସରେ ଧର୍ମଗତ କଳହ ଅସଂଖ୍ୟ ଯୁଦ୍ଧ ବିଗ୍ରହ ତଥା ବିବାଦର କାରଣ ହୋଇ ରହିଆସିଅଛି । ଏହା ଅଗ୍ରଗତି କ୍ଷେତ୍ରରେ ମଧ୍ୟ ଏକ ବୃହତ୍ ପ୍ରତିବନ୍ଧକ ହୋଇ ସମସ୍ତ ଧାର୍ମିକ ଓ ଅଧାର୍ମିକ ଜନତାର ଘୋର ଉତ୍କଟ ଘୃଣାକୁ ବୃଦ୍ଧିପ୍ରାପ୍ତ କରାଇଛି । ସମସ୍ତ ଧର୍ମର ଅନୁଗାମୀମାନଙ୍କୁ ଅବଶ୍ୟ ଏହି କଳହ ଦ୍ୱାରା ଉତ୍ପନ୍ନ ହୋଇଥିବା ମୌଳିକ ପ୍ରଶ୍ନଗୁଡ଼ିକ ସହ ସମ୍ମୁଖୀନ ହେବା ନିମିତ୍ତ ଆଗ୍ରହ ପ୍ରକାଶ କରିବାକୁ ହେବ, ଏବଂ ସୁସ୍ପଷ୍ଟ ସମାଧାନରେ

ପହଞ୍ଚିବାକୁ ହେବ । କିପରି ସେମାନଙ୍କ ମଧ୍ୟରେ ରହିଥିବା ପାର୍ଥକ୍ୟଗୁଡ଼ିକୁ ସିଦ୍ଧାନ୍ତ ଓ କାର୍ଯ୍ୟକ୍ରମ ଜରିଆରେ ସମାଧାନ କରିବାକୁ ହେବ ? ମାନବଜାତିର ଧାର୍ମିକ ନେତୃବର୍ଗପ୍ରତି ଯେଉଁ ଆହ୍ୱାନ ଆଜି ସମ୍ମୁଖୀନ ହୋଇଛି, ତାହା ହେଉଛି : କରୁଣାନିର୍ଯ୍ୟାସରେ ପରିପୂର୍ଣ୍ଣ ହୋଇଥିବା ହୃଦୟ ଓ ସତ୍ୟପ୍ରତି ରହିଥିବା ଏକ ଆଗ୍ରହସହ ମାନବଜାତିର ଦୁର୍ଦ୍ଦଶାକୁ ଚିନ୍ତାକରିବା, ଏବଂ ବିନୟ ପୂର୍ବକ ସର୍ବଶକ୍ତିମାନ୍ ସ୍ରଷ୍ଟାଙ୍କ ସମ୍ମୁଖରେ ଦଣ୍ଡାୟମାନ ରହି ନିଜ ନିଜକୁ ଏହି ପ୍ରଶ୍ନ କରିବା ଯେ, ସେମାନଙ୍କ ମଧ୍ୟରେ ରହିଥିବା ପାରସ୍ପରିକ ଧର୍ମତତ୍ତ୍ୱ ସମ୍ବଳିତ ପାର୍ଥକ୍ୟଗୁଡ଼ିକୁ ସେମାନେ ଆପୋଷ ସହିଷ୍ଣୁତା ପୂର୍ଣ୍ଣ ବିପୁଳ ଉନ୍ମାଦନା ମଧ୍ୟରେ ସମ୍ପୂର୍ଣ୍ଣରୂପେ ଭୁଲିପାରିବେ କି ? ଏହା ସେମାନଙ୍କୁ ମାନବୀୟ ବୁଝାମଣା ଓ ଶାନ୍ତିର ଉନ୍ନତି ପଥରେ ଏକତ୍ର ମିଳିତହୋଇ କର୍ମ କରିବାରେ ଅବଶ୍ୟ ସହାୟକ ହେବ ।

ନାରୀଜାତିର ସ୍ୱାଧୀନତା, ତଥା ଉଭୟ ସ୍ତ୍ରୀ ଓ ପୁରୁଷଙ୍କ ମଧ୍ୟରେ ପୂର୍ଣ୍ଣ ସାମ୍ୟଭବର ସଫଳ ରୂପାୟନ ବିଶ୍ୱଶାନ୍ତି ପ୍ରତିଷ୍ଠାନିମିତ୍ତ ସ୍ୱଳ୍ପସ୍ୱୀକୃତ ପୂର୍ବାନୁଷଙ୍ଗିକତା ହେଲେ ମଧ୍ୟ ତାହା ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ହୋଇ ରହିଥାଏ । ଉକ୍ତ ସାମ୍ୟଭବର ପ୍ରତ୍ୟାଖ୍ୟାନ ବିଶ୍ୱଜନତାର ପ୍ରାୟ ଅର୍ଦ୍ଧେକଙ୍କ ବିରୁଦ୍ଧରେ ଅନ୍ୟାୟ କର୍ମ ସମ୍ପନ୍ନ କରିଥାଏ; ଏବଂ ପୁରୁଷମାନଙ୍କ ମଧ୍ୟରେ ଏପରି କ୍ଷତି-କାରକ ମନୋବୃତ୍ତି ତଥା ଅଭ୍ୟାସକୁ ବୃଦ୍ଧିପ୍ରାପ୍ତ କରାଇଥାଏ, ଯାହାକି ପରିବାର ମଧ୍ୟରୁ କର୍ମସ୍ଥଳୀ, ରାଜନୈତିକ ଜୀବନ, ଓ ପରିଶେଷେ ଆନ୍ତଃରାଷ୍ଟ୍ରୀୟ ସମ୍ପର୍କ ମଧ୍ୟକୁ ମଧ୍ୟ ସ୍ଥାନାନ୍ତରିତ ହୋଇଯାଇଥାଏ । ଏହି ସାମ୍ୟଭବର ପ୍ରତ୍ୟା-ଖ୍ୟାନକୁ ନ୍ୟାୟସଙ୍ଗତ କରିବା ପାଇଁ କୌଣସି ନୈତିକ, ବ୍ୟାବହାରିକ ବା ଜୈବଶାସ୍ତ୍ରୀୟ କ୍ଷେତ୍ର ନାହିଁ । ନାରୀମାନଙ୍କୁ ଯଦି ମାନବୀୟ ପ୍ରଚେଷ୍ଟାରେ ସମସ୍ତ କ୍ଷେତ୍ର ମଧ୍ୟରେ ପୂର୍ଣ୍ଣଅଂଶ ଗ୍ରହଣନିମିତ୍ତ ସ୍ୱାଗତ କରାଯିବ, ତାହାହେଲେ ଏପରି ନୈତିକ ତଥା ମନସ୍ତାତ୍ତ୍ୱିକ ବାୟୁମଣ୍ଡଳ ସୃଷ୍ଟିହେବ; ଯେଉଁଥିରେ କି, ଆନ୍ତଃରାଷ୍ଟ୍ରୀୟ ଶାନ୍ତିର ଅଙ୍କୁରୋଦ୍‌ଗମ ଘଟିବ ।

ଯେଉଁ ସାର୍ବଜନୀନ ଶିକ୍ଷାର ଲକ୍ଷ୍ୟ ପ୍ରତ୍ୟେକ ବିଶ୍ୱାସ ଓ ଜାତିର ନିଷ୍ଠାବାନ୍ ବ୍ୟକ୍ତିମାନଙ୍କୁ ଏକ ସେନାଦଳ ରୂପେ ଏହାର ସେବା କାର୍ଯ୍ୟରେ ପୂର୍ବରୁ ତାଲିକାଭୁକ୍ତ କରିସାରିଛି, ତାହା ବର୍ତ୍ତମାନ ବିଶ୍ୱର ସମସ୍ତ ରାଷ୍ଟ୍ରମାନଙ୍କର ସରକାରବର୍ଗଙ୍କଠାରୁ ଅତୀବ ସାହାଯ୍ୟ ଓ ସମର୍ଥନ ଲାଭ କରିବା ନିମିତ୍ତ ଯୋଗ୍ୟତା ହାସଲ କରିଛି । କାରଣ ନିରକ୍ଷରତା ହେଉଛି ଜନସାଧାରଣଙ୍କର ପତନ ଓ ଧ୍ୱଂସର ଅବିସମ୍ବାଦିତ ମୂଖ୍ୟ କାରଣ ଓ କୁସଂସ୍କାରର ଚିରସ୍ଥାୟୀକରଣ । କୌଣସି ରାଷ୍ଟ୍ର ଶିକ୍ଷାକୁ ଏହାର ସମସ୍ତ ନାଗରିକ ପ୍ରତି ଅନୁମୋଦନ ନକରି କଦାପି କୃତିତ୍ୱ ଅର୍ଜନ କରିପାରିବ ନାହିଁ । ସମ୍ବଳର ଅଭାବ ଅଧିକାଂଶ ରାଷ୍ଟ୍ରଙ୍କୁ, ଏହି ଶିକ୍ଷାର ଆବଶ୍ୟକତାକୁ ପରିପୂର୍ଣ୍ଣ କରିବା ନିମିତ୍ତ ବ୍ୟବସ୍ଥିତ ଅଗ୍ରାଧିକାରର ଏକ ନିର୍ଦ୍ଦିଷ୍ଟ ଆଦେଶ ସାବ୍ୟସ୍ତ କରି ସେମାନଙ୍କର ଦକ୍ଷତାକୁ ସଙ୍କୁଚିତ କରିଦେଇଛି । ସମ୍ପୃକ୍ତ ସିଦ୍ଧାନ୍ତ ପ୍ରସ୍ତୁତିକାରୀ ସଂସ୍ଥାଗୁଡ଼ିକ ଯଦି ମହିଳା ଓ ବାଳିକାମାନଙ୍କର ଶିକ୍ଷା ପ୍ରତି ପ୍ରଥମ ଅଗ୍ରାଧିକାର ପ୍ରଦାନ କରିବା ବିବେଚନା କରନ୍ତି, ତାହାହେଲେ, ଅଶେଷ କଲ୍ୟାଣ ସାଧନ କରି ପାରନ୍ତେ । କାରଣ, ଶିକ୍ଷିତାମାତାମାନଙ୍କ ମାଧ୍ୟମରେ ହିଁ ଜ୍ଞାନର ପ୍ରସାର ଅତ୍ୟନ୍ତ ଫଳପ୍ରଦଭାବେ ସମଗ୍ର ସମାଜ ମଧ୍ୟରେ ଦ୍ରୁତଗତିରେ ଅଭିବୃଦ୍ଧି ଲାଭ କରିପାରିବ । ଆଉ ମଧ୍ୟ ସମୟର ଆବଶ୍ୟକତା ସହ ତାଳ ରଖୁ ପ୍ରତିଟି ଶିଶୁର ଆଦର୍ଶ ଶିକ୍ଷାର ଅଂଶସ୍ୱରୂପ ବିଶ୍ୱ ନାଗରିକତାର ଧାରଣାକୁ ଶିକ୍ଷାଦେବା ନିମିତ୍ତ ବିଶ୍ୱର ବିବେଚନା ପ୍ରଦତ୍ତ ହେବା ଉଚିତ୍ ।

ଜନସାଧାରଣଙ୍କ ମଧ୍ୟରେ ଯୋଗାଯୋଗ ରକ୍ଷାକରିବାର ଏକ ମୌଳିକ ଅଭାବ, ବିଶ୍ୱଶାନ୍ତି ପ୍ରତିଷ୍ଠାଜନିତ ପ୍ରଚେଷ୍ଟାକୁ ଶୋଚନୀୟ ଭାବେ ଦୁର୍ବଳ କରିଦିଏ । ଏକ ଆନ୍ତଃରାଷ୍ଟ୍ରୀୟ ସହାୟକ ଭାଷାର ପ୍ରଚଳନ ଏହି ସମସ୍ୟାର ସ୍ଥାୟୀ ସମାଧାନକୁ ସୁଦୂରପ୍ରସାରୀ କରିଥାଏ, ଏବଂ ସର୍ବାଧିକ ଆଶୁଧ୍ୟାନାକର୍ଷଣକୁ ଆବଶ୍ୟକ କରିଥାଏ ।

ଏହି ସମସ୍ତ ସମସ୍ୟାରେ ମୁଖ୍ୟତଃ ଦୁଇଟି ବିଷୟ ଉପରେ ଗୁରୁତ୍ୱ ପ୍ରତିପାଦନ କରିବା ପ୍ରୟୋଜନ । ତନ୍ମଧ୍ୟରୁ ଗୋଟିଏ ହେଉଛି:– ଯୁଦ୍ଧର ବିଲୋପ ସାଧନ । ଏହା ସାଧାରଣତଃ ଏକ ଚୁକ୍ତି ବା ସନ୍ଧିପତ୍ର ଅନ୍ତର୍ଭୁକ୍ତ ବିଷୟ ନୁହେଁ; ମାତ୍ର ଏହା ହେଉଛି, ଗୋଟିଏ ଅତୀବ ଜଟିଳ ଦାୟିତ୍ୱ, ଯାହା ନିମିତ୍ତ ଏକ ନୂତନ ପର୍ଯ୍ୟାୟର ପ୍ରତିଶ୍ରୁତି ଆବଶ୍ୟକ, ଯାହାକି, ଚିରଚରିତ ଶାନ୍ତିସ୍ଥାପନର ମତବାଦଗୁଡ଼ିକ ସହ ସଂଶ୍ଳିଷ୍ଟ ହୋଇନଥିବ । କେବଳ ରାଜନୈତିକ ଚୁକ୍ତିନାମାକୁ ଭିତ୍ତିକରି ଗଠିତ ହୋଇଥିବା ସାମୂହିକ ନିରାପତ୍ତାର ଧାରଣା ହେଉଛି ଏକ ଅବାସ୍ତବ କଳ୍ପନା । ଅନ୍ୟ ବିଷୟଟି ହେଉଛି– ଶାନ୍ତି ସମସ୍ୟା ସହ ଜଡ଼ିତ ରହିଥିବା ପ୍ରାଥମିକ ପଦକ୍ଷେପକୁ ଏପରି ଏକ ମୌଳିକ ନୀତିଗତ ପର୍ଯ୍ୟାୟ ଆଡକୁ ଉତ୍‌ଥିତ କରାଇବା, ଯାହାକି ପୂର୍ଣ୍ଣ ବାସ୍ତବତାବାଦ (Pragmatism)ରୁ ପୃଥକ ହୋଇଥିବ । କାରଣ ଏହା ହେଉଛି ସାରମର୍ମ ଯେ, ଶାନ୍ତିପ୍ରତିଷ୍ଠା ଆଧ୍ୟାତ୍ମିକ ବା ନୈତିକ ମନୋବୃତ୍ତି ଦ୍ୱାରା ସମର୍ଥିତ ହୋଇ ଏକ ଆଭ୍ୟନ୍ତରୀୟ ଅବସ୍ଥାରୁ ଅଗ୍ରଗତି ଲାଭ କରିଥାଏ, ଏବଂ ଏହା ମୁଖ୍ୟତଃ ଏହି ଧାରଣାକୁ ଉଦ୍‌ବୁଦ୍ଧ କରେ ଯେ, ଶାନ୍ତିପ୍ରତିଷ୍ଠା ନିମିତ୍ତ ଏକ ସ୍ଥାୟୀ ସମାଧାନ ନିରୂପିତ ହେବା ଅବଶ୍ୟମ୍ଭାବୀ ।

ଆଧ୍ୟାତ୍ମିକ ମୌଳିକନୀତି ବା ଯାହାକୁ ଅଧିକାଂଶ ବ୍ୟକ୍ତି ମାନବିକ ମୂଲ୍ୟବୋଧ ନାମରେ ନାମିତ କରିଥା'ନ୍ତି, ତାହାଦ୍ୱାରା ପ୍ରତିଟି ସାମାଜିକ ସମସ୍ୟା ନିମିତ୍ତ ସିଦ୍ଧାନ୍ତଗୁଡ଼ିକୁ ନିରୂପଣ କରାଯାଇପାରିବ । ଯେକୌଣସି ସୁଉଦ୍ଦେଶ୍ୟ ସମ୍ପନ୍ନ ଗୋଷ୍ଠୀ ସାଧାରଣ ଭାବେ ଏହାର ସମସ୍ୟାବଳୀ ପ୍ରତି ବ୍ୟାବହାରିକ ସିଦ୍ଧାନ୍ତ ସମୂହକୁ ପ୍ରସ୍ତୁତ କରିପାରିବ । କିନ୍ତୁ ସାଧାରଣତଃ ସୁଉଦ୍ଦେଶ୍ୟ ଓ ବ୍ୟାବହାରିକଜ୍ଞାନ ସର୍ବଦା ଯଥେଷ୍ଟ ହୋଇନଥାଏ । ଆଧ୍ୟାତ୍ମିକ ମୌଳିକନୀତିର ଅପରିହାର୍ଯ୍ୟଗୁଣ ହେଉଛି ଏହି ଯେ, ଏହା କେବଳ ମାନବୀୟ ଚରିତ୍ରର ଅବିଚ୍ଛେଦ୍ୟଗୁଣ ସହ ସାମଞ୍ଜସ୍ୟ ରକ୍ଷା କରୁଥିବା ଏକ ପରିପ୍ରେକ୍ଷୀକୁ ଉପସ୍ଥାପିତ ନକରି ଏକ ଶକ୍ତିଶାଳୀ

ମନୋବୃତ୍ତି ତଥା ଏକ ଉଚ୍ଚାଭିଳାଷକୁ ମଧ୍ୟ ପ୍ରଦର୍ଶିତ କରିଥାଏ; ଯାହାକି ସୁଚିନ୍ତକ ବ୍ୟବହାରିକ ପ୍ରତିକାରର ଆବିଷ୍କାର ଓ ସମ୍ପାଦନକୁ ସୁଗମ କରି ଦେଇଥାଏ । ସରକାରୀ ନେତୃବର୍ଗ ଓ କର୍ତ୍ତୃତ୍ୱାଧିଷ୍ଠ ସମସ୍ତ ବ୍ୟକ୍ତିଗଣ ଯଦି ସେମାନଙ୍କ ପ୍ରଚେଷ୍ଟା ମଧ୍ୟରେ ସମ୍ପୃକ୍ତ ମୌଳିକ ନୀତିକୁ ଚିହ୍ନିବା ଉଦ୍ଦେଶ୍ୟରେ ପ୍ରଥମେ ସିଦ୍ଧାନ୍ତ କରନ୍ତି; ଏବଂ ତାପରେ ସେଗୁଡ଼ିକ ଦ୍ୱାରା ପରିଚାଳିତ ହୁଅନ୍ତି, ତାହାହେଲେ, ସେମାନେ ସେମାନଙ୍କ ଉଦ୍ୟମରେ ପ୍ରତିଷ୍ଠା ଲଭ କରିପାରିବେ ।

# ତୃତୀୟ

ଆମ ସମ୍ମୁଖରେ ବର୍ତ୍ତମାନ ଯେତେଗୁଡ଼ିଏ ସମସ୍ୟାର ସମାଧାନ ରହିଛି, ତନ୍ମଧ୍ୟରେ ପ୍ରଥମ ପ୍ରଶ୍ନ ହେଉଛି; କିପରି ଏହି ଆଧୁନିକ ବିଶ୍ୱ; ଏହାର ପାରିପାର୍ଶ୍ୱିକ ପଦ୍ଧତି ମଧ୍ୟରେ ଜଡ଼ିତଥିବା କଳହ ସହ ବଦ୍ଧମୂଳ ହୋଇ ରହିଥିବା ଧାରଣାଗୁଡ଼ିକର ପରିବର୍ତ୍ତନ କରି ଏପରି ଏକ ନୂତନ ବିଶ୍ୱକୁ ରୂପାନ୍ତରିତ ହେବ, ଯେଉଁଠାରେ ସୁସଙ୍ଗତି ତଥା ସହଯୋଗିତା ପ୍ରତିଷ୍ଠିତ ହେବ ।

ବିଶ୍ୱବ୍ୟବସ୍ଥା କେବଳ ମାନବଜାତିର ଏକତା ଉପରେ ଗଢିଉଠିଥିବା ଅଟଳ ଚେତନାଶକ୍ତିକୁ ଭିତ୍ତିକରି ପ୍ରତିଷ୍ଠାଲାଭ କରିପାରିବ, ଯାହାକୁ ମାନବସମାଜର ଯାବତୀୟ ବିଜ୍ଞାନ ଦୃଢ଼ଭାବେ ସ୍ୱୀକାର କରିଥାନ୍ତି । ନୃତତ୍ତ୍ୱ, ଶରୀରତତ୍ତ୍ୱ ଓ ମନସ୍ତତ୍ତ୍ୱ ପ୍ରଭୃତି ଜୀବନର ଗୌଣଦିଗରେ ଅପରିସୀମ ପାର୍ଥକ୍ୟ ସୃଷ୍ଟିକରି ରହିଥିଲେ ମଧ୍ୟ କେବଳ ଗୋଟିଏ ମାନବସମାଜକୁ ସ୍ୱୀକାର କରିଥା'ନ୍ତି । ଏହି ସତ୍ୟକୁ ସ୍ୱୀକାର କରିବାକୁ ହେଲେ କୁସଂସ୍କାରକୁ ପରିତ୍ୟାଗ କରିବାକୁ ହେବ । କୁସଂସ୍କାରଗୁଡ଼ିକ ବିଭିନ୍ନ ପ୍ରକାରର ଯଥା– ଜାତି, ଶ୍ରେଣୀ, ବର୍ଣ୍ଣ, ଧର୍ମଭାବନା, ଗଷ୍ଠ ଓ ଲିଙ୍ଗ ତଥା ଭୌତିକ ସଭ୍ୟତାରକ୍ରମ ଏବଂ ଅନ୍ୟ ସମସ୍ତ ପ୍ରକାରର କୁସଂସ୍କାର, ଯାହାକି ବ୍ୟକ୍ତିବିଶେଷକୁ ଅନ୍ୟମାନଙ୍କଠାରୁ ଉତ୍କୃଷ୍ଟତର ବୋଲି ପ୍ରରୋଚିତ କରିଥାଏ ।

ସାଙ୍ଗଠନିକ ତଥା ପ୍ରଶାସନିକ ଦିଗରୁ ବିଶ୍ୱକୁ ଗୋଟିଏ ଦେଶ ଓ ମାନବଜାତିର ଗୃହସଦୃଶ ଗଣ୍ୟ କରିବାର ପ୍ରଥମ ମୌଳିକ ପୂର୍ବାନୁସଙ୍ଗିକତା ହେଉଛି– ମାନବଜାତିର ଏକତ୍ୱକୁ ସ୍ୱୀକାର କରିବା । ବିଶ୍ୱଶାନ୍ତି ପ୍ରତିଷ୍ଠା ଉପଲକ୍ଷେ ଯେକୌଣସି ସଫଳ ଉଦ୍ୟମ ପ୍ରତି ଏହି ଆଧ୍ୟାତ୍ମିକ ମୌଳିକନୀତିର ସାର୍ବଜନୀନ ସ୍ୱୀକୃତି ହେଉଛି ଅତୀବ ଅପରିହାର୍ଯ୍ୟ । ସୁତରାଂ, ଏହାକୁ ସାର୍ବଜନୀନ କ୍ଷେତ୍ରରେ ଉଦ୍‌ଘୋଷଣା କରିବା, ବିଦ୍ୟାଳୟମାନଙ୍କରେ ଏହା

ଉପରେ ଆଧାରିତ ବିଷୟଗୁଡ଼ିକୁ ଶିକ୍ଷାଦେବା, ଏବଂ ଏହାକୁ ଅନ୍ତର୍ଭୁକ୍ତ କରିଥିବା ସମାଜର ଗଠନ ପ୍ରକ୍ରିୟାରେ ମୌଳିକ ପରିବର୍ତ୍ତନ ଆଣିବା ନିମିତ୍ତ ପ୍ରସ୍ତୁତିକରଣ ସ୍ୱରୂପ ଏହାକୁ ପ୍ରତ୍ୟେକ ରାଷ୍ଟ୍ରରେ ନିରନ୍ତର ଦୃଢ଼ଭାବେ ଘୋଷଣା କରିବା ବାଞ୍ଛନୀୟ ।

ବାହ'ଇ ଦୃଷ୍ଟିକୋଣରେ ମାନବଜାତିର ଏକତାକୁ ସ୍ୱୀକାର କରିବା ଅର୍ଥ, "ସମସ୍ତ ସଭ୍ୟଜଗତର ପୁନର୍ଗଠନ ଓ ଅସାମରିକଗଣ ଅପେକ୍ଷା କିଛି ନ୍ୟୁନତର ବିଷୟକୁ ପ୍ରକାଶନ କରିବା । ଉକ୍ତ ସଭ୍ୟଜଗତ ଜୀବନର ସମସ୍ତ ଅତ୍ୟାବଶ୍ୟକୀୟ ଦିଗରେ ସୁସମ୍ବନ୍ଧ ଭାବେ ମିଳିତ ହୋଇ ଏହାର ରାଜନୈତିକ ବ୍ୟବସ୍ଥା, ଏହାର ଆଧ୍ୟାତ୍ମିକ ଉଚ୍ଚାଭିଳାଷ, ବାଣିଜ୍ୟ ଓ ଅର୍ଥନୀତି ଏବଂ ଲିପି ଓ ଭାଷା ତଥା ଏହାର ସଂଘଭୁକ୍ତ ରାଷ୍ଟ୍ରମାନଙ୍କର ବିଶେଷତ୍ୱ ମଧ୍ୟରେ ତଥାପି ସୀମାହୀନ ଅବସ୍ଥାରେ ରହିଥାଏ ।"

ଏହି କେନ୍ଦ୍ରୀୟ ମୌଳିକ ନୀତିର ନିହିତାର୍ଥଗୁଡ଼ିକୁ ବିସ୍ତୃତଭାବେ ଆଲୋଚନା କରି ବାହ'ଇଧର୍ମର ଅଭିଭାବକ ଶୋଘିଏଫେଣ୍ଡି ୧୯୩୧ ଖ୍ରୀଷ୍ଟାବ୍ଦରେ ଏହି ମନ୍ତବ୍ୟ ଦେଇଥିଲେ : "ସମାଜର ପ୍ରଚଳିତ ଭିତ୍ତିଗୁଡ଼ିକର ଉଚ୍ଛେଦ ସାଧନ ଦିଗରେ ଲକ୍ଷ୍ୟ କରିବା ଦୂରେଥାଉ, ଏହା ଏକ ନିତ୍ୟ ପରିବର୍ତ୍ତନଶୀଳ ଜଗତର ଆବଶ୍ୟକତା ସହ ଐକ୍ୟତାନିକ ପଦ୍ଧତିରେ ଉକ୍ତ ସମାଜର ଅନୁଷ୍ଠାନଗୁଡ଼ିକର ପୁନର୍ଗଠନ ଉଦ୍ଦେଶ୍ୟରେ ଏହାର ଭିତ୍ତିକୁ ସମ୍ପ୍ରସାରିତ କରିବାର ଚେଷ୍ଟିତ ରହିଥାଏ । ଏହା କୌଣସି ବିଧିସଙ୍ଗତ ଅନୁରକ୍ତି ସହ ବିରୋଧଭାବ ପୋଷଣ କରେନାହିଁ ବା ଅତ୍ୟାବଶ୍ୟକୀୟ ଆନୁଗତ୍ୟକୁ ମଧ୍ୟ ଏହା କଦାପି ଦୁର୍ବଳ କରିଦିଏ ନାଁ । ମନୁଷ୍ୟମାନଙ୍କର ଅନ୍ତଃକରଣରେ ରହିଥିବା ଏକ ସୁସ୍ଥ ତଥା ଧୀଶକ୍ତିସମ୍ପନ୍ନ ଦେଶପ୍ରୀତି–ଶିଖାର ଶ୍ୱାସରୋଧ କରିବା ଏହାର ଅଭିପ୍ରାୟ ନୁହେଁ, କିମ୍ବା ଅତ୍ୟଧିକ ପ୍ରୟୋଜନୀୟ ରାଷ୍ଟ୍ରୀୟ ସ୍ୱାୟତ୍ତ ଶାସନଗତ ପଦ୍ଧତିର ମଧ୍ୟ ଅବସାନ ଘଟାଇବା ଏହାର ଉଦ୍ଦେଶ୍ୟ ନୁହେଁ; ଯଦିଓ ଅତିରିକ୍ତ କ୍ଷମତା କେନ୍ଦ୍ରୀକରଣର ମନ୍ଦଗୁଣଗୁଡ଼ିକୁ ପରିତ୍ୟାଗ କରିବା ଏକାନ୍ତ ଆବଶ୍ୟକ ।

ଏହି ଜଗତର ରାଷ୍ଟ୍ର ତଥା ଜନସାଧାରଣଙ୍କ ମଧ୍ୟରେ ଭେଦଭାବ ସୃଷ୍ଟି କରୁଥିବା ଅଭ୍ୟାସ ଓ ଚିନ୍ତା, ପାରମ୍ପରିକତା ଓ ଭାଷା, ଇତିହାସ ଓ ଜଳବାୟୁ ତଥା ମାନବଜାତିର ଉତ୍ପତ୍ତି ପ୍ରଭୃତିର ବିଭିନ୍ନତାକୁ ଏହା ହେୟଜ୍ଞାନ କରେନାହିଁ, ବା ପଦଦଳିତ କରିବାର ଅପଚେଷ୍ଟା ମଧ୍ୟ କରେନାହିଁ । ମାନବଗୋଷ୍ଠୀକୁ ଉଜ୍ଜୀବିତ କରୁଥିବା ଅନ୍ୟ ଯେକୌଣସି ମୌଳିକ ନୀତି ଅପେକ୍ଷା ଏହା ଏକ ଉଚ୍ଚତର ଅଭିଳାଷ ତଥା ବ୍ୟାପକତର ଆନୁଗତ୍ୟକୁ ପ୍ରକାଶ କରିଥାଏ । ଏହା ରାଜ୍ୟ-ସ୍ତରୀୟ ଉତ୍ତେଜନାର ଗୌଣତ୍ୱ ଉପରେ ଗୁରୁତ୍ୱ ଦେଇଥାଏ, ଏବଂ ଏକ ମିଳିତ ବିଶ୍ୱର ଅନିବାର୍ଯ୍ୟ ଦାବୀଗୁଡ଼ିକ ପ୍ରତି ଆଗ୍ରହ ପ୍ରକାଶ କରିଥାଏ । ଏକ ପକ୍ଷରେ, ଏହା ଅତିରିକ୍ତ କେନ୍ଦ୍ରୀକରଣକୁ ଖଣ୍ଡନ କରିଥାଏ, ଏବଂ ଅନ୍ୟପକ୍ଷରେ ଏହା ସାମ୍ୟଭାବର ସମସ୍ତ ପ୍ରଚେଷ୍ଟାକୁ ଅସ୍ୱୀକାର କରିଥାଏ । ଏହାର ମୂଳମନ୍ତ୍ର ହେଉଛି–ବିଭିନ୍ନତା ମଧ୍ୟରେ ଏକତା........"

ଏହି ଲକ୍ଷ୍ୟଗୁଡ଼ିକରେ ସଫଳତା ହାସଲ କରିବାକୁ ହେଲେ ରାଷ୍ଟ୍ରୀୟ ରାଜନୈତିକ ଚିନ୍ତାଧାରାର ବହୁ କ୍ଷେତ୍ରରେ ଉତ୍ତମ ବୁଝାମଣା କରିବାକୁ ହେବ । ମାତ୍ର ପ୍ରାଞ୍ଜଳଭାବେ ନିରୂପିତ ହୋଇଥିବା ଆଇନ୍ ବା ରାଷ୍ଟ୍ରମାନଙ୍କ ମଧ୍ୟରେ ପାରସ୍ପରିକ ସମ୍ପର୍କକୁ ନିୟନ୍ତ୍ରଣ କରୁଥିବା ତଥା ସାର୍ବଜନୀନଭାବେ ସ୍ୱୀକୃତିପ୍ରାପ୍ତ ହୋଇ କାର୍ଯ୍ୟକାରୀ ହେବାକୁ ଥିବା ସେହି ମୌଳିକ ନୀତିଗୁଡ଼ିକର ଅନୁପସ୍ଥିତିରେ ଯେଉଁ ଅରାଜକତା ସୃଷ୍ଟିଲାଭ କରିଛି, ବର୍ତ୍ତମାନ ଉପରୋକ୍ତ ଚିନ୍ତାଧାରାର କ୍ଷେତ୍ରଗୁଡ଼ିକ ତାହାର ସୀମା ନିକଟରେ ପହଞ୍ଚିଛି । ଜାତିସଂଘ ବା ଏହାର ଉତ୍ତରଦାୟାଦ ସ୍ୱରୂପ ମିଳିତ ଜାତିସଂଘ ଏବଂ ଏଗୁଡ଼ିକଠାରୁ ସୃଷ୍ଟିଲାଭ କରିଥିବା ଅଧିକାଂଶ ସଙ୍ଗଠନ ତଥା ଚୁକ୍ତିନାମା ବିନା ପ୍ରଶ୍ନରେ ଆନ୍ତଃରାଷ୍ଟ୍ରୀୟ ଦ୍ୱନ୍ଦ୍ୱଗୁଡ଼ିକର କେତେକ ନାସ୍ତିବାଚକ ଫଳାଫଳର ମୂଲ୍ୟକୁ ହ୍ରାସ କରିବା ଦିଗରେ କେବଳ ସାହାଯ୍ୟ କରି ଆସିଛନ୍ତି । କିନ୍ତୁ ସେଗୁଡ଼ିକ ଯୁଦ୍ଧର ନିରାକରଣ ପ୍ରତି ନିଜକୁ ଅସହାୟ ମନେ କରୁଛନ୍ତି । ବାସ୍ତବିକ୍, ଦ୍ୱିତୀୟ ମହାସମର ପରଠାରୁ ବହୁ ସଂଖ୍ୟକ ଯୁଦ୍ଧବିଗ୍ରହ ଅଦ୍ୟାବଧି ଚାଲୁ ରହିଆସିଛି, ଏବଂ ସେଗୁଡ଼ିକ ମଧ୍ୟରୁ ଅଧିକାଂଶ ପ୍ରଚଣ୍ଡରୂପେ ବୃଦ୍ଧି ପାଇବାରେ ଲାଗିଛି ।

ଊନବିଂଶ ଶତାବ୍ଦୀରେ ଯେତେବେଳେ ବାହା'ଉଲ୍ଲାହ୍ ସର୍ବପ୍ରଥମେ ବିଶ୍ୱଶାନ୍ତି ପ୍ରତିଷ୍ଠା ନିମିତ୍ତ ତାଙ୍କ ପ୍ରସ୍ତାବକୁ ଉପସ୍ଥାପିତ କରିଥିଲେ, ସେହି ସମୟଠାରୁ ଉପରୋକ୍ତ ସମସ୍ୟାର ପ୍ରଭାବଶାଳୀ ଦିଗଗୁଡ଼ିକ ଉପଲବ୍ଧି କରିଛି । ବିଶ୍ୱର ଶାସକବର୍ଗଙ୍କୁ ସମ୍ବୋଧନ କରି ସେ ଯେଉଁ ରଚନାବଳୀ ପ୍ରଣୟନ କରିଥିଲେ ସେଥିରେ ସାମୂହିକ ନିରାପତ୍ତାର ପଦ୍ଧତିଗୁଡ଼ିକ ଆତ୍ମପ୍ରକାଶ କରିଥିଲା । ଶୋଘି ଏଫେଣ୍ଡି ବାହା'ଉଲ୍ଲାହ୍‌ଙ୍କର ସେହି ଉକ୍ତିର ଅର୍ଥ ସୂଚିତ କରି ଏହି ମତାମତ ଦେଇଛନ୍ତି :

"ଯଦି ଏହି ପ୍ରଭାବଶାଳୀ ଶବ୍ଦାବଳୀ ବିଶ୍ୱର ସମସ୍ତ ରାଷ୍ଟ୍ରର ଏକ ଭବିଷ୍ୟ ରାଜ୍ୟଗୋଷ୍ଠୀ ଗଠନ ଦିଗରେ ଅପରିହାର୍ଯ୍ୟ ପ୍ରାଥମିକ ବ୍ୟବସ୍ଥା ସ୍ୱରୂପ ଅନିୟନ୍ତ୍ରିତ ରାଷ୍ଟ୍ରୀୟ ସାର୍ବଭୌମତ୍ୱର ଅନିବାର୍ଯ୍ୟ ହ୍ରାସକରଣ ପ୍ରତି ନିର୍ଦ୍ଦେଶ ନଦିଏ, ତାହାହେଲେ ସେ ସମୂହର ଆଉ କି ତାତ୍ପର୍ଯ୍ୟ ରହିବ ? ଏପରି ଏକ ବିଶ୍ୱ–ଉନ୍ନତ–ପ୍ରଶାସନିକ ସଂସ୍ଥାର କେତେକ ପ୍ରତିରୂପ ଗଠନ କରିବାକୁ ହେବ, ଯାହାର ଆନୁକୂଲ୍ୟରେ ବିଶ୍ୱର ସମସ୍ତ ରାଷ୍ଟ୍ର ସ୍ୱତଃପ୍ରବୃତ୍ତ ହୋଇ ଯୁଦ୍ଧ କରିବାର ପ୍ରତିଟି ଦାବୀକୁ ତାହା ପ୍ରତି ହସ୍ତାନ୍ତରିତ କରିଥିବେ । କରଧାର୍ଯ୍ୟ କରିବାର କେତେକ ଅଧିକାର ଓ ସେମାନଙ୍କ ନିଜ ଅଧୀନସ୍ଥ ରାଜ୍ୟଗୁଡ଼ିକ ମଧ୍ୟରେ ଆଭ୍ୟନ୍ତରୀଣ ଶୃଙ୍ଖଳାରକ୍ଷା ବ୍ୟତୀତ ଅନ୍ୟ ସମସ୍ତ ମାରଣାସ୍ତ୍ର ନିର୍ମାଣର ଅଧିକାରକୁ ସେମାନେ ପରିତ୍ୟାଗ କରିଥିବେ । ଉକ୍ତ ପ୍ରଶାସନିକ ସଂସ୍ଥାର କକ୍ଷ ମଧ୍ୟରେ ଏକ ଆନ୍ତଃରାଷ୍ଟ୍ରୀୟ କାର୍ଯ୍ୟନିର୍ବାହୀ ପରିଷଦକୁ (Inter National Executive) ଅନ୍ତର୍ଭୁକ୍ତ କରିବାକୁ ହେବ; ଯାହାକି ଉପରୋକ୍ତ ରାଜ୍ୟଗୋଷ୍ଠୀର ପ୍ରତ୍ୟେକ ଅବାଧ୍ୟ ସଦସ୍ୟ ପ୍ରତି ସର୍ବୋଚ୍ଚ ତଥା ଅନାପତ୍ତିକୃତ କର୍ତ୍ତୃତ୍ୱକୁ ଲାଗୁ କରିବାନିମିତ୍ତ ସମର୍ଥ ହୋଇଥିବ । ଆଉ ମଧ୍ୟ ଉକ୍ତ ପ୍ରଶାସନିକ ସଂସ୍ଥାର କକ୍ଷ ମଧ୍ୟରେ ଏକ ବିଶ୍ୱ ବ୍ୟବସ୍ଥାପକ ସଭା (World Parliament) ଅନ୍ତର୍ଭୁକ୍ତ କରିବାକୁ ହେବ, ଯାହାର ସଦସ୍ୟଗଣ ସେମାନଙ୍କ ନିଜ ନିଜ ଦେଶର ଜନସାଧାରଣଙ୍କ ଦ୍ୱାରା ନିର୍ବାଚିତ ହୋଇଥିବେ, ଏବଂ ସେହି

ନିର୍ବାଚନକୁ ସେମାନଙ୍କର ଦେଶୀୟ ସରକାରବର୍ଗ ଦୃଢ଼ରୂପେ ସମର୍ଥନ କରିଥିବେ । ପୁନଶ୍ଚ ଏକ ସର୍ବୋଚ୍ଚ ସ୍ୱତନ୍ତ୍ର ବିଚାରାଳୟ (Supreme Tribunal) ସେହି ଶାସନସଂସ୍ଥା ମଧ୍ୟରେ ଅବସ୍ଥାପିତ ରହିବ । ଯେଉଁ ସମସ୍ୟା ଗୁଡ଼ିକରେ କେତେକ ଗୋଷ୍ଠୀ ବା ଦେଶ ସେମାନଙ୍କ ଆପତ୍ତି ଅଭିଯୋଗଗୁଡ଼ିକୁ ଉକ୍ତ ସ୍ୱତନ୍ତ୍ର ଅଦାଲତର ବିଚାର ବିବେଚନା ପାଇଁ ସ୍ୱତଃପ୍ରବୃତ୍ତ ହୋଇ ଉପସ୍ଥାପିତ କରିବା ଲାଗି ଅଧିକୃତ ହେଉଥିବେ; ସେହି କ୍ଷେତ୍ରରେ ଉକ୍ତ ବିଚାରାଳୟ ଯେଉଁ ସିଦ୍ଧାନ୍ତ ଦେବ, ତାହାର ଯେପରି ଏକ ବାଧ୍ୟତାମୂଳକ ପ୍ରଭାବ ରହିଥିବ ।

"ଏପରି ଏକ ବିଶ୍ୱସମାଜ ଗଠନ କରିବାକୁ ହେବ, ଯେଉଁଥିରେ ସମଗ୍ର ଅର୍ଥନୈତିକ ପ୍ରତିବନ୍ଧକ ଚିରଦିନ ପାଇଁ ଲୋପ ପାଇଯାଇଥିବ, ଏବଂ ପୁଞ୍ଜି ଓ ଶ୍ରମର ପାରସ୍ପରିକ ନିର୍ଭରଶୀଳତା ନିର୍ଦ୍ଦିଷ୍ଟରୂପେ ସ୍ୱୀକୃତ ହୋଇଥିବ; ଧର୍ମୋନ୍ମାଦନା ଓ ସଂଘର୍ଷର କୋଳାହଳ ଚିରଦିନ ଲାଗି ନିସ୍ତବ୍ଧ ହୋଇଯାଇ-ଥିବ । ବର୍ଣ୍ଣଗତ ଶତ୍ରୁତାର ଅଗ୍ନିଶିଖା ସମ୍ପୂର୍ଣ୍ଣରୂପେ ନିର୍ବାପିତ ହୋଇଯାଇଥିବ, ସଂଘଭୁକ୍ତ ପ୍ରତିନିଧି ରାଷ୍ଟ୍ରମାନଙ୍କର ବିବେଚିତ ନିଷ୍ପତ୍ତି ମଧ୍ୟରୁ ଉଦ୍‌ଭୂତ ହୋଇଥିବା ଏକ ଆନ୍ତଃରାଷ୍ଟ୍ରୀୟ ଆଇନ୍‌ର ଏକମାତ୍ର ସଂହିତା ଉକ୍ତ ସଂଘଭୁକ୍ତ ରାଷ୍ଟ୍ରମାନଙ୍କର ସମ୍ମିଳିତ ଶକ୍ତିର ତୁରନ୍ତ ତଥା ବାଧ୍ୟତାମୂଳକ ହସ୍ତକ୍ଷେପକୁ ଅନୁମୋଦନ କରିଥିବ; ଏବଂ ପରିଶେଷରେ ତାହା ଏପରି ଏକ ବିଶ୍ୱ–ସମାଜ ହୋଇଥିବ, ଯେଉଁଠି ଚପଳ ଓ ସମରଲିପ୍ସୁ ଉଗ୍ରଜାତୀୟବାଦର ପ୍ରଚଣ୍ଡତା ବିଶ୍ୱ ନାଗରିକତ୍ୱର ଏକ ବାଧ୍ୟତାମୂଳକ ଚେତନାଶୀଳତା ମଧ୍ୟକୁ ରୂପାନ୍ତରିତ ହୋଇଥିବ । ବାସ୍ତବିକ୍ ଏହାର ବିସ୍ତୃତ ରୂପରେଖ ମଧ୍ୟରେ ବାହା'ଉଲ୍ଲାହ୍‌ଙ୍କ କଳ୍ପିତ ସେହି ମହାନ୍ ବ୍ୟବସ୍ଥାର ଅଭ୍ୟୁତ୍‌ଥାନ ଘଟିବ, ଯାହାକି ଏକ ଧୀର ପରିପକ୍ୱ ଯୁଗର ସର୍ବୋତ୍କୃଷ୍ଟ ଫଳସ୍ୱରୂପ ବିବେଚିତ ହେବାନିମିତ୍ତ ଭୂପୃଷ୍ଠକୁ ଆଗମନ କରିବ ।"

ଏହି ଦୂରପ୍ରବେଶ୍ୟ ସୁଚିନ୍ତିତ ବ୍ୟବସ୍ଥା କେବଳ ବାହା'ଉଲ୍ଲାହ୍‌ଙ୍କଦ୍ୱାରା ଆଭାସପ୍ରାପ୍ତ ହୋଇଥିଲା । ବାହା'ଉଲ୍ଲାହ୍‌ଙ୍କ ଉକ୍ତିରେ– "ଏପରି ସମୟ ଅବଶ୍ୟ

ଆସିବ, ଯେତେବେଳେ ମନୁଷ୍ୟମାନଙ୍କର ଏକ ସର୍ବବ୍ୟାପକ ପ୍ରକାଣ୍ଡ ସମାବେଶର ଆୟୋଜନ ନିମିତ୍ତ ଅପରିହାର୍ଯ୍ୟ ଆବଶ୍ୟକତା ସାର୍ବଜନୀନଭବେ ଉପଲବ୍ଧ ହେବ । ପୃଥିବୀର ଶାସକବର୍ଗ ତଥା ରଜା ମହାରଜଗଣ ଏଥିରେ ଯୋଗଦେବା ନିମିତ୍ତ ହୃଦୟଙ୍ଗମ କରିବା ଆବଶ୍ୟକ, ଏବଂ ଏଥିରେ ପରିବେଷିତ ହେଉଥିବା ଆଲୋଚନାରେ ଅଂଶ ଗ୍ରହଣକରି ସେମାନଙ୍କୁ ଏପରି ପଦ୍ଧତିକୁ ଗ୍ରହଣ କରିବାକୁ ହେବ, ଯାହାକି ମନୁଷ୍ୟମାନଙ୍କ ମଧ୍ୟରେ ମହାନ୍ ବିଶ୍ୱ ଶାନ୍ତିର ଭିତ୍ତିସ୍ଥାପନ କରିବ ।”

ଜନସାଧାରଣଙ୍କ ସାହସ, ଦୃଢ଼ସଂକଳ୍ପ ପବିତ୍ର ଉଦ୍ଦେଶ୍ୟ, ପରସ୍ପର ପ୍ରତି ନିଃସ୍ୱାର୍ଥପର ପ୍ରେମ, ଏହି ସମସ୍ତ ଆଧ୍ୟାତ୍ମିକ ତଥା ନୈତିକଗୁଣ ଶାନ୍ତି ପ୍ରତି ଏକ ଯୁଗାନ୍ତକାରୀ ପଦକ୍ଷେପକୁ ଅଗ୍ରଗାମୀ କରଇବା ନିମିତ୍ତ ଅତ୍ୟନ୍ତ ଆବଶ୍ୟକ । ଏଗୁଡ଼ିକ କେନ୍ଦ୍ରୀଭୂତ ରୂପରେ ମାତ୍ର ଗୋଟିଏ ଦିଗ ଆଡ଼କୁ ନିର୍ଦ୍ଦେଶ ଦେଇଥାନ୍ତି, ଯାହାକି ହେଉଛି, କର୍ମପ୍ରବୃତ୍ତିର ଦିଗ । ଆଉ ମଧ୍ୟ ଏହି କର୍ମପ୍ରବୃତ୍ତି ପ୍ରୟୋଜନୀୟ ସଂକଳ୍ପ ଶକ୍ତିକୁ ଏପରିଭବେ ଜାଗ୍ରତ କରଉଛି, ଯାହାଫଳରେ ମନୁଷ୍ୟର ବାସ୍ତବତା ଅର୍ଥାତ୍ ତାହାର ବିଶ୍ୱାସଶକ୍ତି ପ୍ରତି ତୁରନ୍ତ ଧ୍ୟାନ ଦେବାକୁ ପଡ଼ିବ । ଏହି ଶକ୍ତିଶାଳୀ ବାସ୍ତବତାର ପ୍ରାସଙ୍ଗିକତାକୁ ହୃଦୟଙ୍ଗମ କରିବା ଅର୍ଥ– ନିରପେକ୍ଷ, ନିଷ୍କାମ, ଓ ହାର୍ଦ୍ଦିକ ପରମର୍ଶ ତଥା ଏହି ପ୍ରକ୍ରିୟାର ପରିଣାମ ମାଧ୍ୟମରେ କାର୍ଯ୍ୟକରି ଏହାର ଅନୁପମ ମହତ୍ତ୍ୱକୁ ବାସ୍ତବରୂପ ଦେବା ନିମିତ୍ତ ଯେଉଁ ସାମାଜିକ ପ୍ରୟୋଜନୀୟତା ଅନୁଭୂତ ହୋଇଥାଏ, ତାହାକୁ ଯଥାର୍ଥଭବେ ଉପଲବ୍ଧି କରିବା । ବାହା’ଉଲ୍ଲାହ୍ ମାନବୀୟ କାର୍ଯ୍ୟକଳାପକୁ ବ୍ୟବସ୍ଥିତ କରଇବା ଉଦ୍ଦେଶ୍ୟରେ ପରମର୍ଶ ଗ୍ରହଣର ଅତ୍ୟାବଶ୍ୟକୀୟତା ତଥା ସ୍ୱଗୁଣାବଳୀ ପ୍ରତି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଧ୍ୟାନ ଆକର୍ଷଣ କରି କହିଛନ୍ତି : “ପରମର୍ଶ ଗ୍ରହଣ ଅଧିକ ବ୍ୟାପକ ଜାଗୃତିକୁ ପ୍ରଦାନ କରିଥାଏ, ଏବଂ ଅନୁମାନକୁ ନିଶ୍ଚୟତାରେ ପରିଣତ କରିଥାଏ । ଏହା ଏପରି

ଏକ ଜାଜ୍ଜ୍ୱଲ୍ୟମାନ ଜ୍ୟୋତିଃ, ଯାହାକି ତମସାବୃତ୍ତ ବିଶ୍ୱରେ ଆମର ପଥ ପ୍ରଦର୍ଶନ କରିଥାଏ ଓ ଆମକୁ ପରିଚାଳିତ କରିଥାଏ । ପ୍ରତ୍ୟେକ ବସ୍ତୁ ନିମିତ୍ତ ପରିପୂର୍ଣ୍ଣତା ତଥା ପରିପକ୍ୱତାର ଏକ ସ୍ଥିତି ରହିଥାଏ ଏବଂ ଚିରଦିନ ପାଇଁ ରହିଥିବ ମଧ୍ୟ । ବୋଧଶକ୍ତିର ପରିପକ୍ୱ ଅବଦାନ ପରାମର୍ଶ ଗ୍ରହଣ ମାଧ୍ୟମରେ ପ୍ରକାଶମାନ ହୋଇଥାଏ ।" ସେ ଶାନ୍ତି ପ୍ରତିଷ୍ଠା ଉପଲକ୍ଷେ ଯେଉଁ ପ୍ରସ୍ତାବ ଆଗତ କରିଯାଇଛନ୍ତି, ତାହା ଲାଭ କରିବାକୁ ହେଲେ ପରାମର୍ଶ ଗ୍ରହଣ ପ୍ରତି ପ୍ରୟାସ କରିବାକୁ ହେବ । ଏହା ପୃଥିବୀର ଜନସାଧାରଣଙ୍କ ମଧ୍ୟରେ ଏପରି ଏକ ଫଳପ୍ରସୂ ଆଗ୍ରହ ସୃଷ୍ଟି କରିବ, ଯାହାଫଳରେ ସମାଜର କୌଣସି ଶକ୍ତି ତାହାର ବିଜୟ ପଥରେ ପ୍ରତିବନ୍ଧକ ସୃଷ୍ଟି କରିପାରିବ ନାହିଁ ।

ଏହି ବିଶ୍ୱସମାବେଶର ଅଗ୍ରଗତି ସମ୍ପର୍କରେ ବାହା'ଉଲ୍ଲାହ୍‌ଙ୍କ ଜ୍ୟେଷ୍ଠପୁତ୍ର ତଥା ତାଙ୍କ ରଚନାବଳୀର ବିଧିବଦ୍ଧ ସମୀକ୍ଷକ ଆବ୍‌ଦୋଲବାହ ଏହି ଅନ୍ତର୍ଦୃଷ୍ଟିସମ୍ପନ୍ନ ଉକ୍ତି ପ୍ରକାଶ କରିଯାଇଛନ୍ତି : "ସେମାନଙ୍କୁ ଅବଶ୍ୟ ଶାନ୍ତିର ଧର୍ମକୁ ସାଧାରଣ ପରାମର୍ଶ ଗ୍ରହଣ ଉଦ୍ଦେଶ୍ୟରେ ପରିଣତ କରିବାକୁ ହେବ ଏବଂ ଏପରି ଏକ ବାଧ୍ୟତାମୂଳକ ଚୁକ୍ତିନାମା ବା ଏକ ଅଙ୍ଗୀକାରକୁ ପ୍ରତିଷ୍ଠା କରିବାକୁ ହେବ, ଯାହାର ନିଧାନଗୁଡ଼ିକ ଅବଶ୍ୟ ସୁସ୍ଥ, ଅଲଘଂନୀୟ ଓ ସୁନିଶ୍ଚିତ ହୋଇରହିବ । ସେମାନଙ୍କୁ ସମସ୍ତ ଜଗତ ପ୍ରତି ଏହି ଅଙ୍ଗୀକାର ପ୍ରତିଷ୍ଠାର ଘୋଷଣା ଉଦ୍‌ଘୋଷିତ କରିବାକୁ ହେବ ଏବଂ ଏଥିପ୍ରତି ସମଗ୍ର ମାନବଜାତିର ଅନୁମୋଦନ ଲାଭ କରିବାକୁ ହେବ । ସମଗ୍ର ଜଗତର କଲ୍ୟାଣ ଓ ଶାନ୍ତିର ବାସ୍ତବ ଉତ୍ସସ୍ୱରୂପ ଏହି ସର୍ବୋଚ୍ଚ ତଥା ମହତ୍ତ୍ୱପୂର୍ଣ୍ଣ ଦାୟିତ୍ୱକୁ ଭୂପୃଷ୍ଠରେ ବାସକରୁଥିବା ସମସ୍ତ ଅଧିବାସୀଙ୍କଦ୍ୱାରା ଈଶ୍ୱରସମ୍ମତ ବୋଲି ବିଚାର କରାଯିବା ବିଧେୟ । ଏହି ସର୍ବମହାନ୍ ଅଙ୍ଗୀକାରର ସ୍ଥାୟିତ୍ୱ ଓ ଦୃଢ଼ତାକୁ ନିରାପଦ ରଖିବାଲାଗି ମାନବସମାଜର ସର୍ବଶକ୍ତିକୁ ସଜ୍ଜିତ କରିବାକୁ ହେବ । ଏହି ସର୍ବବ୍ୟାପକ ଚୁକ୍ତିନାମାରେ ପ୍ରତ୍ୟେକ ରାଜ୍ୟର ସୀମାନ୍ତ ପ୍ରଦେଶ ତଥା ସୀମାରେଖା ପ୍ରାଞ୍ଜଳଭାବେ ନିରୂପିତ ହେବ । ସରକାରବର୍ଗଙ୍କ ପାରସ୍ପରିକ

ସମ୍ପର୍କ କ୍ଷେତ୍ରରେ ଅନ୍ତର୍ନିହିତ ହୋଇ ରହିଥିବା ପଦ୍ଧତିଗୁଡ଼ିକ ନିର୍ଦ୍ଦିଷ୍ଟ ଭାବେ ନିର୍ଦ୍ଧାରିତ ହେବ; ଏବଂ ଆନ୍ତର୍ଜାତୀୟ ଚୁକ୍ତିନାମା ଓ ନୈତିକ ଦାୟିତ୍ୱଗୁଡ଼ିକ ନିର୍ଦ୍ଧାରିତ ହୋଇ ରହିବ । ସେହିଭଳି ପ୍ରତ୍ୟେକ ସରକାରଙ୍କର ମାରଣାସ୍ତ୍ର ସଂଗ୍ରହ କଡ଼ାକଡ଼ି ଭାବେ ସୀମିତ ହେବା ବିଧେୟ । କାରଣ ଯଦି କୌଣସି ରାଷ୍ଟ୍ରର ସାମରିକ ଶକ୍ତି ତଥା ସାମରିକ ପ୍ରସ୍ତୁତି ବୃଦ୍ଧି ପାଇବା ନିମିତ୍ତ ଅନୁମୋଦନ ଲାଭକରେ, ତାହାହେଲେ ଅନ୍ୟମାନଙ୍କ ମନରେ ତଦ୍ଦ୍ୱାରା ସନ୍ଦେହ ଜାଗ୍ରତ ହେବ । ଏହି ଗୁରୁତ୍ୱପୂର୍ଣ୍ଣ ଚୁକ୍ତିନାମା ସହ ଅନ୍ତର୍ନିହିତ ହୋଇ ରହିଥିବା ମୌଳିକ ପଦ୍ଧତି ଏପରି ଭାବେ ନିର୍ଦ୍ଧାରିତ ହେବ, ଯାହାଫଳରେ ପରବର୍ତ୍ତୀ କାଳରେ ଏହାର ଯେକୌଣସି ନିୟମକୁ ଲଙ୍ଘନ କରୁଥିବା କୌଣସି ସରକାରଙ୍କୁ ବଶ୍ୟତା ସ୍ୱୀକାର କରାଇବା ଲାଗି ପୃଥିବୀର ସମସ୍ତ ରାଷ୍ଟ୍ର ତାହାକୁ ବାଧ୍ୟ କରିବା ବାଞ୍ଛନୀୟ ହେବ । ଏପରିକି, ମାନବସମାଜକୁ ସାମୂହିକ ଭାବେ ପ୍ରଦାନ କରାଯାଇଥିବା କ୍ଷମତା ବଳରେ ସେହି ଅଭିଯୁକ୍ତ ସରକାରକୁ ଧ୍ୱଂସ କରିଦେବା ଲାଗି ଏହା କୃତସଂକଳ୍ପ ହେବା ଉଚିତ୍ । ଯଦି ବିଶ୍ୱର ଏହି ବ୍ୟାଧିଗ୍ରସ୍ତ ଶରୀର ପ୍ରତି ଏହି ସର୍ବୋତ୍ତମ ପ୍ରତିକାର ପ୍ରୟୋଗ କରାଯିବ, ତାହାହେଲେ ଏହା ନିଶ୍ଚିତ ରୂପେ ନିଜର ଅସୁସ୍ଥତାରୁ ଆରୋଗ୍ୟ ଲାଭକରିବ, ଏବଂ ଶାଶ୍ୱତକାଳ ପର୍ଯ୍ୟନ୍ତ ନିରାପଦ ଓ ସୁରକ୍ଷିତ ହୋଇ ରହିବ ।"

ଏହି ଶକ୍ତିଶାଳୀ ସମାବେଶର ଅନୁଷ୍ଠାନ ନିର୍ଦ୍ଧାରିତ ସମୟ ଠାରୁ ବହୁ ବିଳମ୍ବିତ ହୋଇଯାଇଛି ।

ହୃଦୟର ସମସ୍ତ ଉତ୍ସୁକତା ସହ ଆମେ ସମସ୍ତ ରାଷ୍ଟ୍ରର ନେତୃବର୍ଗଙ୍କୁ ଅନୁରୋଧ କରୁଛି, ସେମାନେ ଏହି ସୁଯୋଗ ମୁହୂର୍ତ୍ତ ପାଇଁ ସଚେତନ ରହି ଉପରୋକ୍ତ ବିଶ୍ୱ ସମାବେଶକୁ ଆହ୍ୱାନ କରିବା ଉଦ୍ଦେଶ୍ୟରେ ଏକ ଅପରିବର୍ତ୍ତନୀୟ ବଳିଷ୍ଠ ପଦକ୍ଷେପ ଗ୍ରହଣ କରନ୍ତୁ । ଇତିହାସ ଆଧାରିତ ସମସ୍ତ ନିୟାମକ ଶାଶ୍ୱତ କାଳଲାଗି ଉକ୍ତ କାର୍ଯ୍ୟାନୁଷ୍ଠାନକୁ ଗ୍ରହଣ କରିବା ନିମିତ୍ତ ମାନବସମାଜକୁ ପ୍ରଣୋଦିତ କରି ଆସିଛନ୍ତି, ଏବଂ ଏହା ଚିରକାଳ

ଲାଗି ସେହି ଚିର ପ୍ରତୀକ୍ଷିତ ପରିପକ୍ୱତାର ଉଦୟକାଳର ଏକ ନିଦର୍ଶନ ହୋଇ ରହିଥିବ ।

ମିଳିତ ଜାତିସଂଘ ଏହାର ସଦସ୍ୟ ରାଷ୍ଟ୍ରବର୍ଗଙ୍କର ପୂର୍ଣ୍ଣ ସମର୍ଥନ କ୍ରମେ ଏପରି ଏକ ସର୍ବଶ୍ରେଷ୍ଠ ଘଟଣାର ସୁମହତ୍ ଉଦ୍ଦେଶ୍ୟ ପ୍ରତି ଜାଗ୍ରତହୋଇ ଉଠିବନାହିଁ କି ?

ପ୍ରତ୍ୟେକ ସ୍ଥାନର ପୁରୁଷ ଓ ମହିଳା, ଯୁବକ ଓ ଶିଶୁଗଣ ସମସ୍ତ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଉପରୋକ୍ତ ଅନୁଜ୍ଞାମୂଳକ କାର୍ଯ୍ୟକ୍ରମର ଶାଶ୍ୱତ ଉପାଦେୟତାକୁ ପୁନର୍ଗଠିତ କରନ୍ତୁ, ଏବଂ ଅକୁଣ୍ଠ ସମ୍ମତି ସହ ସେମାନଙ୍କର ସ୍ୱର ଉତ୍ତୋଳନ କରନ୍ତୁ । ବାସ୍ତବିକ୍, ଏହି ଜଗତର ସାମାଜିକ ଜୀବନର ବିକାଶ ମଧ୍ୟରେ ଆମ ବଂଶଧର ଗଣ ଉକ୍ତ ଗୌରବମୟ ପର୍ଯ୍ୟାୟକୁ ଉଦ୍‌ଘାଟନ କରିବା ବାଞ୍ଛନୀୟ ।

## ଚତୁର୍ଥ

ଆମେ ଉପଲବ୍ଧି କରୁଥିବା ଆଶାବାଦିତାର ଉତ୍ସ ହେଉଛି ଏପରି ଏକ ପୂର୍ବଦୃଷ୍ଟି, ଯାହାକି ସାମରିକ ଅବସାନ ତଥା ଆନ୍ତଃରାଷ୍ଟ୍ରୀୟ ସହଯୋଗ ମୂଳକ ସଙ୍ଘର ନିର୍ମାଣକୁ ଅତିକ୍ରମ କରି ବହୁଦୂରକୁ ପରିବ୍ୟାପ୍ତ ହୋଇ ରହିଛି । ରାଷ୍ଟ୍ରଗୁଡ଼ିକ ମଧ୍ୟରେ ସ୍ଥାୟୀଶାନ୍ତି ହେଉଛି ଏକ ଅପରିହାର୍ଯ୍ୟ ପର୍ଯ୍ୟାୟ, ମାତ୍ର ବାହାଓଲ୍ଲାହ୍ ଦୃଢ଼ଭାବେ ଘୋଷଣା କରିଛନ୍ତି ଯେ, ତାହା ମାନବଜାତିର ସାମାଜିକ ବିକାଶର ସର୍ବଶେଷ ଲକ୍ଷ୍ୟ ନୁହେଁ । ଆଣବିକ ଯୁଦ୍ଧ ଜନିତ ଗଣହତ୍ୟାର ସର୍ବବିଧ୍ୱଂସୀ ଭୟ ହେତୁ ବାଧ୍ୟତା ସହକାରେ ପୃଥିବୀରେ କେତେକ ସାମୟିକ ଯୁଦ୍ଧବିରତି ସମ୍ଭବ ହୋଇଛି । ପ୍ରତିଯୋଗୀ ରାଷ୍ଟ୍ରଗୁଡ଼ିକ ଆଶଙ୍କା ଭିତରେ ରହି ଅନିଚ୍ଛାକ୍ରମେ ରାଜନୈତିକ ଶାନ୍ତି ସ୍ଥାପନ, ତଥା ନିରାପତ୍ତା ଓ ସହବସ୍ଥାନ ନିମିତ୍ତ ଗତାନୁଗତିକ ପ୍ରସ୍ତୁତିକରଣ ସଂଗ୍ରହ କରିବାରେ ଲାଗିଛନ୍ତି । ଉପରୋକ୍ତ ପଦକ୍ଷେପ ଗୁଡ଼ିକର ଅତୀତ ହୋଇ, ଏବଂ ଯେଉଁ ପରୀକ୍ଷା ନିରୀକ୍ଷାକୁ ଉପରୋକ୍ତ ପଦକ୍ଷେପଗୁଡ଼ିକ ସହଯୋଗ ପ୍ରଣାଳୀ ମଧ୍ୟରେ ସମ୍ଭବପର କରାଉଛନ୍ତି, ସେ ସମସ୍ତର ଅତୀତ ହୋଇ ଏକ ସର୍ବଶ୍ରେଷ୍ଠ ଲକ୍ଷ୍ୟ ଅବସ୍ଥାନ କରିଛି । ତାହା ହେଉଛି— ଏକ ସାର୍ବଜନୀନ ପରିବାର ମଧ୍ୟରେ ସମଗ୍ର ବିଶ୍ୱ ଜନତାର ଏକତ୍ରୀକରଣ ।

ଅନୈକ୍ୟ ରୂପକ ଏକ ସଙ୍କଟକୁ ପୃଥିବୀର ରାଷ୍ଟ୍ର ଓ ଜନସାଧାରଣ ଆଉ ଅଧିକ କାଳ ସହ୍ୟକରି ପାରିବେନାହିଁ । ଏହାର ପରିଣାମକୁ ଅନୁଧ୍ୟାନ କଲେ, ଅତ୍ୟନ୍ତ ଭୟପ୍ରଦ ବୋଲି ଉପଲବ୍ଧ ହୋଇଥାଏ । ଏହା ଏତେ ସୁସ୍ପଷ୍ଟ ଯେ, ଏଥିପାଇଁ କୌଣସି ବାସ୍ତବ ପ୍ରମାଣ ଆବଶ୍ୟକତା ନଥାଏ । ବାହାଓଲ୍ଲାହ୍ ଏକ ଶତାବ୍ଦୀରୁ ଊର୍ଦ୍ଧ୍ୱକାଳ ପୂର୍ବେ ଲେଖିଥିଲେ; "ମାନବଜାତିର ଏକତା ଦୃଢ଼ରୂପେ ପ୍ରତିଷ୍ଠିତ ନହେଲା ପର୍ଯ୍ୟନ୍ତ ଏହାର କଲ୍ୟାଣ, ଶାନ୍ତି ଓ ନିରାପତ୍ତା ଦୁର୍ଲ୍ଲଭ ହୋଇରହିଥିବ ।" ଶୋଘିଏଫେଣ୍ଡି ନିଜର ମନ୍ତବ୍ୟ ସ୍ୱରୂପ କହିଥିଲେ, "ଏକତାରେ ପ୍ରତିଷ୍ଠିତ ହେବାପାଇଁ, ଏବଂ ଯୁଗଯୁଗ ଧରି ଚାଲିଥିବା ମାନବ-

ଜାତିର ଶହୀଦତ୍ୱକୁ ପରିସମାପ୍ତି କରିବା ନିମିତ୍ତ ଏହା (ମାନବଜାତି) ଆର୍ତ୍ତନାଦ କରୁଛି ଓ ମୁମୁର୍ଷୁ ଅବସ୍ଥାରେ ନିପତିତ ହୋଇଛି ।" ଶୋଘିଏଫେଣ୍ଡି ପୁନଶ୍ଚ କହିଛନ୍ତି : "ସମଗ୍ର ମାନବଜାତିର ଏକତ୍ରୀକରଣ ହେଉଛି ସେହି ଅବସ୍ଥାର ଏକ ବିଶୁଦ୍ଧତାର ନିଦର୍ଶନ, ଯାହାପ୍ରତି ମାନବସମାଜ ସମ୍ପ୍ରତି ନିକଟତର ହେଉଛି । ପରିବାର, ଉପଜାତି ନଗରୀରାଜ୍ୟ ତଥା ରାଷ୍ଟ୍ରଗୁଡ଼ିକର ଏକତା ପୂର୍ଣ୍ଣତଃ ପ୍ରତିଷ୍ଠାଲାଭ କରୁଛି । ବିଶ୍ୱ ଏକତା ହେଉଛି ଚରମ ଲକ୍ଷ୍ୟସ୍ଥଳ, ଯାହା ଆଡ଼କୁ ଉତ୍ପୀଡ଼ିତ ମାନବଜାତି ଆପ୍ରାଣ ଉଦ୍ୟମ କରି ଚାଲିଛି । ରାଷ୍ଟ୍ରନିର୍ମାଣ ପ୍ରକ୍ରିୟା ପରିପୂର୍ଣ୍ଣ ହେବାକୁ ଯାଉଛି । ନିରଙ୍କୁଶ ରାଷ୍ଟ୍ରୀୟ ସାର୍ବ-ଭୌମତ୍ୱ ମଧ୍ୟରେ ସହଜାତ ହୋଇ ରହିଥିବା ଅରାଜକତା ବର୍ତ୍ତମାନ ଘୋର ଚରମ ପରିଣତିରେ ଉପନୀତ ହୋଇଛି । ପରିପକ୍ୱତା ଆଡକୁ ବିକାଶଲାଭ କରୁଥିବା ବିଶ୍ୱପକ୍ଷେ ଏହି ପିତୁଳା ଅପଦେବତା ରୂପକ ଅବ୍ୟବସ୍ଥାକୁ ସମ୍ପୂର୍ଣ୍ଣ-ରୂପେ ପରିହାର କରିବାକୁ ହେବ, ତଥା ମାନବୀୟ ସମ୍ପର୍କର ଏକତା ଓ ସାମୂହିକତାକୁ ସ୍ୱୀକାର କରିବାକୁ ପଡ଼ିବ, ଏବଂ ଚିରକାଳ ଲାଗି ଏପରି ଏକ ଯାନ୍ତ୍ରିକ ବ୍ୟବସ୍ଥାକୁ ପ୍ରତିଷ୍ଠା କରିବାକୁ ହେବ; ଯାହାକି ଜୀବନର ଏହି ମୌଳିକ ସିଦ୍ଧାନ୍ତକୁ ମୂର୍ତ୍ତିମନ୍ତ କରି ଗଢିବ ।"

ଉପରୋକ୍ତ ଦୃଷ୍ଟିକୋଣକୁ ପରିବର୍ତ୍ତନର ସମସ୍ତ ସମସାମୟିକ ଶକ୍ତି ପ୍ରମାଣସିଦ୍ଧ କରିଥା'ନ୍ତି । ସାମ୍ପ୍ରତିକ ଆନ୍ତଃରାଷ୍ଟ୍ରୀୟ ଆନ୍ଦୋଳନ ତଥା ଉନ୍ନୟନ ମଧ୍ୟରେ ବିଶ୍ୱଶାନ୍ତି ପ୍ରତି ରହିଥିବା ଅନୁକୂଳ ସଙ୍କେତଗୁଡ଼ିକର ପ୍ରାମାଣିକତାକୁ ପୂର୍ବୋକ୍ତ ବହୁ ଦୃଷ୍ଟାନ୍ତ ମାଧ୍ୟମରେ ସୂକ୍ଷ୍ମଦୃଷ୍ଟିରେ ବିଚାର କରଯାଇ ପାରିବ । ବସ୍ତୁତଃ ପୃଥିବୀର ପ୍ରତ୍ୟେକ ସଂସ୍କୃତି, ଗୋଷ୍ଠୀ ଓ ରାଷ୍ଟ୍ର ମଧ୍ୟରୁ ଆଗତ ହୋଇ ମିଳିତ ଜାତିସଂଘର ବହୁବିଧ ସଂସ୍ଥାରେ କର୍ମରତ ଥିବା ପୁରୁଷ ଓ ନାରୀ-ମାନଙ୍କର ସେନାବାହିନୀ ଏପରି ଏକ ସାର୍ବଜନୀନ "ନାଗରିକ ସେବା"କୁ ପ୍ରଦର୍ଶିତ କରୁଛନ୍ତି, ଯାହାର ହୃଦୟଗ୍ରାହୀ ସମ୍ପାଦନ ହେଉଛି ସହଯୋଗ ମାତ୍ରାର ନିଦର୍ଶନ ଏବଂ ତାହା ନିରୁତ୍ସାହିତ ଅବସ୍ଥାରେ ମଧ୍ୟ ପ୍ରାପ୍ତ ହୋଇ-ପାରିବ । ଏକ ଆଧ୍ୟାତ୍ମିକ ବସନ୍ତଋତୁ ରୂପକ ଐକ୍ୟପ୍ରତି ପ୍ରୋତ୍ସାହନ,

ଅଗଣିତ ଆନ୍ତଃରାଷ୍ଟ୍ରୀୟ ସମ୍ମିଳନୀଗୁଡ଼ିକ ମାଧ୍ୟମରେ ନିଜ କଥାକୁ ବ୍ୟକ୍ତ କରିବା ଲାଗି ସଂଗ୍ରାମ କରୁଛି ଏବଂ ଏହି ସମ୍ମିଳନୀଗୁଡ଼ିକ ଜନସାଧାରଣଙ୍କୁ ଶୃଙ୍ଖଳାର ଏକ ପ୍ରକାଣ୍ଡ ବ୍ୟୂହ ମଧ୍ୟରୁ ଆଣି ଏକତ୍ର କରୁଛି । ଏହି ଐକ୍ୟପ୍ରତି ପ୍ରୋତ୍ସାହନ ଆନ୍ତଃରାଷ୍ଟ୍ରୀୟ ପରିକଳ୍ପନାଗୁଡ଼ିକରେ ଶିଶୁ ଓ ଯୁବକମାନଙ୍କୁ ଅନ୍ତର୍ଭୁକ୍ତ କରିବା ପାଇଁ ପ୍ରବର୍ତ୍ତିତ କରୁଛି । ବାସ୍ତବିକ୍, ଏହାହିଁ ସାର୍ବଜନୀନତା ପ୍ରତି ଗୁରୁତ୍ୱପୂର୍ଣ୍ଣ ଆନ୍ଦୋଳନର ଯଥାର୍ଥ ଉତ୍ସ, ଯାହା ସାହାଯ୍ୟରେ ଐତିହାସିକ ଦୃଷ୍ଟିକୋଣରୁ ପରସ୍ପରବିରୋଧୀ ହୋଇ ରହିଥିବା ଧର୍ମ ତଥା ଧାର୍ମିକ ଗୋଷ୍ଠୀର ସଦସ୍ୟଗଣ ନିଜ ନିଜ ଆଡ଼କୁ ଅବାଧରେ ଆକର୍ଷିତ ହୋଇ ଆସୁଛନ୍ତି ବୋଲି ଅନୁମିତ ହୁଏ । ଯେଉଁ ବିଶ୍ୱଏକତା ସାମରିକ ବ୍ୟବସ୍ଥା ତଥା ଆତ୍ମ-କ୍ଷମତା-ବୃଦ୍ଧିର ବିରୁଦ୍ଧରେ ପ୍ରତିକୂଳପ୍ରବଣ ହୋଇ ଅହରହ ସଂଗ୍ରାମରତ ଥାଏ, ତାହା ପ୍ରତି ଆଗ୍ରହୀ ମନୋଭବ ବିଂଶ ଶତାବ୍ଦୀର ଶେଷ ବର୍ଷଗୁଡ଼ିକରେ ମାନବ-ଜୀବନର ଏକ ପ୍ରତିପତ୍ତିଶାଳୀ ଓ ବ୍ୟାପକ ବିଶେଷତ୍ୱର ଲକ୍ଷଣ ଅଟେ ।

ବାହ'ଇ ସମାଜର ଅଭିଜ୍ଞତାକୁ ଉପରୋକ୍ତ ବିଶ୍ୱ ଏକତାର ଦୃଷ୍ଟାନ୍ତ ସ୍ୱରୂପ ବିବେଚନା କରାଯାଇପାରେ । ଏହି ସମାଜ ବିଭିନ୍ନ ରାଷ୍ଟ୍ର, ସଂସ୍କୃତି, ଶ୍ରେଣୀ ତଥା ଧର୍ମଭାବନାର ପୃଷ୍ଠଭୂମିରୁ ଆଗତ ପ୍ରାୟ ୩୦ ରୁ ୪୦ ଲକ୍ଷ୍ୟ ବ୍ୟକ୍ତିମାନଙ୍କୁ ନେଇ ଗଠିତ ହୋଇଛି । ଏହି ବ୍ୟକ୍ତିଗଣ ବିଭିନ୍ନ ଦେଶର ଆଧ୍ୟାତ୍ମିକ, ସାମାଜିକ, ତଥା ଅର୍ଥନୈତିକ ଆବଶ୍ୟକତାର ଆନୁସଙ୍ଗିକ କାର୍ଯ୍ୟାବଳୀର ଏକ ସୁବିସ୍ତୃତ ପରିସର ମଧ୍ୟରେ କାର୍ଯ୍ୟରତ ରହିଛନ୍ତି । ଏହା ହେଉଛି ଏକ ସାମାଜିକ ଆଙ୍ଗିକ ଗଠନ ପ୍ରକ୍ରିୟା ଓ ବିଭିନ୍ନ ମାନବୀୟ ପରିବାରର ପ୍ରତିନିଧି । ଆଉ ମଧ୍ୟ ଏହି ସମାଜ ସାଧାରଣତଃ ଗ୍ରହଣ କରିଥିବା ଏକ ପରାମର୍ଶମୂଳକ ବ୍ୟବସ୍ଥା ମାଧ୍ୟମରେ ଏହାର ବ୍ୟାପାରବଳୀକୁ ନିର୍ବାହ କରିଥାଏ; ଏବଂ ମାନବ ଇତିହାସରେ ରହିଥିବା ଦିବ୍ୟମାର୍ଗ ଦର୍ଶନର ଯାବତୀୟ ଅବଦାନରୂପକ ଧର୍ମସମୂହକୁ ସମାନ ଗୁରୁତ୍ୱ ପ୍ରଦାନ କରିଥାଏ । ଏହାର ପ୍ରତିଷ୍ଠାତାଙ୍କର ଏକ ମିଳିତ ବିଶ୍ୱପ୍ରତି ପୂରୋଦୃଷ୍ଟିଜନିତ ପ୍ରଯୋଗ-ସିଦ୍ଧତାର ଅନ୍ୟ ଏକ ହୃଦୟସ୍ପର୍ଶୀ ପ୍ରମାଣ ହେଉଛି ଏହାର ଅସ୍ତିତ୍ୱ । ଆଗାମୀ

ଯୁଗର ଯେକୌଣସି ଆବଶ୍ୟକୀୟ ଆହ୍ୱାନ ପ୍ରତି ସମାନରୂପେ ଏକ ବିଶ୍ୱସମାଜ ତୁଲ୍ୟ ମାନବଜାତି ଅବସ୍ଥାନ କରିପାରିବ ବୋଲି ଏହି ସମାଜ ଅନ୍ୟ ଏକ ସାକ୍ଷ୍ୟ ପ୍ରଦର୍ଶନ କରେ । ଯଦି ଉପରୋକ୍ତ ବାହ'ଇ ଅଭିଜ୍ଞତା ମାନବଜାତିର ଏକତା ମଧ୍ୟରେ ଯେକୌଣସି ସୁଚିନ୍ତିତ କର୍ମପନ୍ଥା ମାଧ୍ୟମରେ ପୁନର୍ବଳବତ୍ତର କରୁଥିବା ଆଶାକୁ ସାହାଯ୍ୟ କରିପାରେ, ତାହାହେଲେ ଆମେ ଏହାକୁ ଅଧ୍ୟୟନଯୋଗ୍ୟ ଏକ ଆଦର୍ଶରୂପେ ପରିବେଶଣ କରି ସୁଖୀ ହୋଇପାରିବା ।

ସାମ୍ପ୍ରତିକ ପରିସ୍ଥିତିରେ ସମଗ୍ର ଜଗତକୁ ଆହ୍ୱାନ ଦେଇଥିବା ଦାୟିତ୍ୱର ସର୍ବୋଚ୍ଚ ଗୁରୁତ୍ୱକୁ ଅନୁଧ୍ୟାନ କରି ଆମେ ଦିବ୍ୟସ୍ରଷ୍ଟାଙ୍କର ଭୀତିପ୍ରଦ ମାହାତ୍ମ୍ୟ ସମ୍ମୁଖରେ ନମ୍ରତାପୂର୍ବକ ମଥାନତ କରୁଛୁ । ସେ ତାଙ୍କର ଅନନ୍ତପ୍ରେମ ବଶତଃ ସମଉପାଦାନ ମଧ୍ୟରୁ ସମଗ୍ର ମାନବଜାତିକୁ ସୃଷ୍ଟି କରିଛନ୍ତି, ରତ୍ନରୂପକ ମନୁଷ୍ୟର ବାସ୍ତବତାକୁ ସମୁନ୍ନତ କରିଛନ୍ତି; ତାହାକୁ ଧୀଶକ୍ତି ଓ ପ୍ରଜ୍ଞା, ମହାନୁଭବତା ଓ ଅମରତ୍ୱସହ ସମ୍ମାନିତ କରିଛନ୍ତି; ଏବଂ "ତାଙ୍କୁ ଜାଣିବା ଓ ପ୍ରେମ କରିବା ଉଦ୍ଦେଶ୍ୟରେ ଅନୁପମ ବିଶେଷତ୍ୱ ତଥା ସାମର୍ଥ୍ୟକୁ ମନୁଷ୍ୟଠାରେ ଅର୍ପଣ କରିଛନ୍ତି ।" ଉକ୍ତ ସାମର୍ଥ୍ୟକୁ "ସମଗ୍ର ସୃଷ୍ଟି ମଧ୍ୟରେ ଅନ୍ତର୍ନିହିତ ହୋଇ ରହିଥିବା ଶକ୍ତିଦାୟିନୀ ଉନ୍ମାଦନା ଓ ପ୍ରାଥମିକ ଉଦ୍ଦେଶ୍ୟରୂପେ ଅବଶ୍ୟ ବିବେଚ୍ୟ ହେବାକୁ ପଡ଼ିବ ।"

ଆମେ ଏହି ଦୃଢ଼ ଧାରଣାକୁ ପୋଷଣ କରୁଛୁ ଯେ, ସମସ୍ତ ମାନବ-ପ୍ରାଣୀ "ଏକ ଶାଶ୍ୱତ ଅଗ୍ରଗାମୀ ସଭ୍ୟତାକୁ ଅଗ୍ରସର କରାଇବା" ନିମିତ୍ତ ସୃଷ୍ଟିଲାଭ କରିଛନ୍ତି, ଏବଂ "ବଣ୍ୟପଶୁ ତୁଲ୍ୟ କାର୍ଯ୍ୟ କରିବା ମାନବ ପକ୍ଷେ ଯୋଗ୍ୟତାର ପରିଚାୟକ ନୁହେଁ ।" ମାନବୀୟ ମର୍ଯ୍ୟାଦାସହ ଯଥାଯଥ ଗୁଣାବଳୀ ହେଉଛି–ସମସ୍ତ ବ୍ୟକ୍ତିଙ୍କ ପ୍ରତି ବିଶ୍ୱସ୍ତତା, ସହିଷ୍ଣୁତା, ଦୟା, କରୁଣା ତଥା ସପ୍ରେମ–ଦୟାର୍ଦ୍ରତା । "ମାନବ ସ୍ଥିତିରେ ସହଜାତ ହୋଇ ରହିଥିବା ପ୍ରଚ୍ଛନ୍ନ ଅନନ୍ତ ଶକ୍ତିକୁ ଓ ତାହାର ଭୂପୃଷ୍ଠସ୍ଥ ଲକ୍ଷ୍ୟସାଧନର ପୂର୍ଣ୍ଣ କୌଶଳକୁ ଏବଂ ତାହାର ବାସ୍ତବତାର ସହଜାତ ଚମତ୍କାରିତାକୁ ଏହି ପ୍ରତିଶ୍ରୁତ ଯୁଗରେ ଅବଶ୍ୟ

ପ୍ରକାଶମାନ ହେବାକୁ ପଡ଼ିବ;" ଏହି ଉକ୍ତି ପ୍ରତି ଆମେ ଦୃଢ଼ଗୁରୁତ୍ୱ ପ୍ରଦାନ କରୁଛୁ । ଏହା ଆମର ଅବିଚଳିତ ବିଶ୍ୱାସ ଓ ଏହାପ୍ରତି ଆମେ ଏହି ପ୍ରୋତ୍ସାହନ ଦାନକରି ଘୋଷଣା କରୁଛୁ ଯେ, ଏକତା ଓ ଶାନ୍ତି ହେଉଛି ଏକମାତ୍ର ସୁଲଭ ଲକ୍ଷ୍ୟ, ଯାହାଆଡ଼କୁ ମାନବସମାଜ ଆପ୍ରାଣ ଉଦ୍ୟମ କରିଚାଲିଛି ।

ଏହି ବିବୃତି ମାଧ୍ୟମରେ ବାହ'ଇମାନଙ୍କର ଆଶାୟୀସ୍ୱର ଶୁଣାଯାଇ ପାରିବ, ଯଦିଓ ସେମାନେ ଏବେ ସୁଦ୍ଧା ବାହ'ଇଧର୍ମର ଉତ୍ପତ୍ତିସ୍ଥଳରେ ନିର୍ଯ୍ୟାତନା ଭୋଗ କରିଚାଲିଛନ୍ତି । ସେମାନଙ୍କର ଦୃଢ଼ଆଶାର ଦୃଷ୍ଟାନ୍ତ ଦ୍ୱାରା ସେମାନେ ଏହି ବିଶ୍ୱାସକୁ ସାକ୍ଷ୍ୟ ପ୍ରଦର୍ଶନ କରୁଛନ୍ତି ଯେ, ବାହ'ଓଲ୍ଲାହ୍‌ଙ୍କ ଦିବ୍ୟ ଉନ୍ମେଷର ପରିବର୍ତ୍ତନକାରୀ ପ୍ରଭାବ ଫଳରେ ଅଧୁନା ଶାନ୍ତିର ଏହି ଯୁଗଯୁଗବ୍ୟାପୀ ସ୍ୱପ୍ନ ଦିବ୍ୟକର୍ତ୍ତୃତ୍ୱର ଶକ୍ତିରେ ସମନ୍ୱିତ ହୋଇ ରହିଛି । ତେଣୁ ଆମେ କେବଳ ଉକ୍ତ ପୂରୋଦୃଷ୍ଟିକୁ ଶବ୍ଦାବଳୀରେ ଆପଣମାନଙ୍କୁ ହସ୍ତାନ୍ତରିତ କରୁନାହୁଁ, ମାତ୍ର ଆସ୍ଥାଭଜନତା ତଥା ଆତ୍ମତ୍ୟାଗର ସାମର୍ଥ୍ୟକୁ ଆହ୍ୱାନ କରୁଛୁ । ପ୍ରତିଟି ସ୍ଥାନରେ ରହୁଥିବା ଆମର ସହଯୋଗୀ ଧର୍ମବିଶ୍ୱାସୀଙ୍କର ଉତ୍କଣ୍ଠାପୂର୍ଣ୍ଣ ଆବେଗକୁ ଶାନ୍ତି ଓ ଐକ୍ୟ ନିମିତ୍ତ ଆମେ ବହନ କରି ନେଉଛୁ । ଯେଉଁମାନେ ଆକ୍ରମଣର ଶୀକାର ହେଉଛନ୍ତି, ଯେଉଁମାନେ କଳହ ତଥା ସଂଘର୍ଷର ଅବସାନ ନିମିତ୍ତ ଆଗ୍ରହ ପ୍ରକାଶ କରୁଛନ୍ତି, ଏବଂ ଯେଉଁ ସୁମହତ୍ ଉଦ୍ଦେଶ୍ୟ ନିମିତ୍ତ ସର୍ବପ୍ରିୟ ଅଦ୍ୱିତୀୟ ସ୍ରଷ୍ଟାଙ୍କଦ୍ୱାରା ମାନବଜାତି ଉତ୍ପତ୍ତି ଲାଭକରିଛି, ତାହାର ଉନ୍ନତି କଳ୍ପେ ଯେଉଁମାନେ ସେମାନଙ୍କର ଆନ୍ତରିକ ନୈତିକତାକୁ ନିୟୋଜିତ କରୁଛନ୍ତି, ଆମେ ସେମାନଙ୍କ ସହ ଯୋଗଦାନ କରିଛୁ ।

ଅଭିଳାଷର ବ୍ୟଗ୍ରତା ହେତୁ, ଆମ ଆତ୍ମବିଶ୍ୱାସର ଗହନତ୍ୱ ଓ ଆଶାର ଚମତ୍କାରିତାକୁ ଜ୍ଞାପନ କରିବାକୁ ଯାଇ, ଆମେ ବାହ'ଓଲ୍ଲାହ୍‌ଙ୍କର ଗୁରୁତ୍ୱପୂର୍ଣ୍ଣ ପ୍ରତିଶ୍ରୁତିକୁ ଉଲ୍ଲେଖ କରୁଛୁ : "ଏହି ସମସ୍ତ ନିରର୍ଥକ କଳହ ଓ ବିନାଶକାରୀ ଯୁଦ୍ଧ ସମ୍ୟକ୍‌ଭାବେ ଅପସାରିତ ହୋଇଯିବ ଏବଂ ଏହା ସ୍ଥାନରେ ସର୍ବମହାନ୍ ଶାନ୍ତି ବିରାଜମାନ କରିବ ।"

ବିଶ୍ୱ ନ୍ୟାୟ ମନ୍ଦିର